## ଉତ୍ସର୍ଗ

ମୋ ଜନ୍ମମାଟି ବାଣପୁରର ପ୍ରିୟ ସନ୍ତାନ

ଓଡ଼ିଆ ଶିଶୁ-ସାହିତ୍ୟର

ଅନ୍ୟତମ ପ୍ରବୀଣ ସ୍ରଷ୍ଟା

ଶ୍ରୀଯୁକ୍ତ ଜଗନ୍ନାଥ ମହାପାତ୍ର

କାନ୍ତ କରେଷୁ !

•

—:o:—

# ସୂଚୀ



—o—

କାହାକୁ ନେଇ ଆମେ କାହାକୁ ଧରି ଆମେ
ଚାଲିବା ଏତେ ଏତେ କାଳ
କାହିଁକି ଆମେ ଏଥି ଆସିଚେ ଜଣେ ଜଣେ
କେ ଯେବେ ନୁହେଁ ଏଥି କାର !
କେ ଯେବେ କାହା ପାଇଁ ଢାଳିବ ନାହିଁ ଲୁହ
ଅସୀମ ବେଦନାର ତଳେ
କା' ଗଉରବେ କିଏ ଉଲୁସି ନ ଉଠିଲେ
ଜୀବନ କାହିଁ ଧରା ପରେ ?

କୃଷ୍ଣଚନ୍ଦ୍ର ତ୍ରିପାଠୀ

## ସାଧକର ସ୍ୱପ୍ନ

ହେ ମୋର ସୁହୃଦ ! ନ ବୁଝ ନ ବୁଝ ମୋର ସାଧନାର ମୂଲ୍ୟ !
ସକଳର ତଳେ ରହିଥାଏ ମୁହିଁ ନ ହୁଏ କାହାର ତୁଲ୍ୟ ;
ମତେ ମନେକର ତୁଚ୍ଛ ଓ ହେୟ
ନ ଦିଅ ନ ଦିଅ ତୁମର ଯା ଦେୟ,
ବୁକୁ ପରେ ମୋର ଭୁଞ୍ଜିଦିଅ ଶତ ଅବମାନନାର ଶଲ୍ୟ,
ହେ ମୋର ସୁହୃଦ ! ନ ବୁଝ ନ ବୁଝ ମୋର ସାଧନାର ମୂଲ୍ୟ;

## ସାଧକର ସ୍ୱପ୍ନ

ତୁମରି ପାଇଁ ମୁଁ ଅଶ୍ରୁ ଝରାଏ ଫଟାଇ ମୋହର ବକ୍ଷ
ତୁମରି ସେବାରେ ପୂରିଉଠୁ ମୋର ଜୀବନର ମହାଲକ୍ଷ୍ୟ ;
ତୁମ ମଙ୍ଗଳ କରେ ଅବିରଳ
ଯେତେ ପାରେ ଗୃହେଁ ମୋର ବଳକଳ,
ତୁମରି ପାଇଁ ମୁଁ ଉଡ଼ଉଠେ ନଭେ ବିସ୍ତାରି ଶ୍ରେଷ୍ଠ ପକ୍ଷ,
ତୁମରି ପାଇଁ ମୁଁ ଅଶ୍ରୁ ଝରାଏ ଫଟାଇ ମୋହର ବକ୍ଷ ।

ଅନ୍ତର ଭରି ହେ ମୋର ପୃଥିବି ! ତୁମରେ ଦିଏ ମୁଁ ଶ୍ରଦ୍ଧା
ତୁମ ଅନ୍ତରେ ଅନ୍ତର ଭରି ନିଶିଦିନ ଥାଏ ବନ୍ଧା,
ଘନ ଅନ୍ଧାରେ ହୁଏ ଆଶ୍ରୟ,
ତୁଆଗି ସକଳ ସ୍ୱାର୍ଥ ଓ ଭୟ,
ତୁମ ଆନନ୍ଦେ କଳ ଗୀତ ଗାଇ ବହେ ମୁଁ ଅଳକାନନ୍ଦା,
ଅନ୍ତର ଭରି ହେ ମୋର ପୃଥିବି ! ତୁମରେ ଦିଏ ମୁଁ ଶ୍ରଦ୍ଧା ।

ଦିଅନା ଦିଅନା ପୌରୁଷ ମୋରେ ଦିଅନା ଦିଅନା ଗର୍ବ,
ସାଧନାର ମୁଁ ଯେ ନିତ୍ୟ ପୂଜାରୀ ସାଧନାହିଁ ମୋର ସର୍ବ,
ସାଧନାରୁ ମୋର ଅମୃତ ଝରେ
ପିଏ ଆନନ୍ଦେ ମୋ କୁଟୀର-ଘରେ,
ସାଧନାର କୋଳେ ଯେବେ ମୁହିଁ ଦୋଳେ ସେ ମୋର ମଧୁର ପର୍ବ
ଦିଅନା ଦିଅନା ପୌରୁଷ ମୋରେ ଦିଅନା ଦିଅନା ଗର୍ବ ।

# ଶୂନ୍ୟ ନୀଡ଼

ପ୍ରାଣଭରା ଅଭିମାନ କହିବ କା' ପାଶେ ?
ବକ୍ଷ ଚିରି କ୍ଷତଚିହ୍ନ ଦେଖାଇବ କାରେ ?
ଜୀବନର ଦୁର୍ବିସହ ଅନନ୍ତ ବେଦନା
ଝରି ଝରି ଆସେ ଯେବେ ଚକ୍ଷୁଲୁହ ଧାରେ ।

ପୃଥିବୀର ସୀମାହୀନ ମହାଅନ୍ଧକାରେ
ଲୁଚି ମୁଁ ଯାଆନ୍ତି ହେଲେ ନ ଆସନ୍ତି ଫେରି,
ମତେ କିମ୍ବା କଲବଲ କରୁଅଛ ଚରମେ ?
ପାରୁନ ଧରାରେ ମୁହିଁ ଲବେ ହସିଖେଳି !

ତୁମକୁ ମୁଁ ଦେଇନ କି ? ପରମ ସମ୍ମାନ
ଗୌରବର ସିଂହାସନେ ନାହିଁ କି ବସାଇ ?
ତୁମକୁ ମୁଁ ପ୍ରାଣଭରି ପାଇନକି ଭଲ ?
ପ୍ରାଣର ଅନନ୍ତ ମାୟା ସମୁଦ୍ରେ ଭସାଇ ।

ତୁମରି ମଙ୍ଗଳ ପାଇଁ ମୋ ଅନ୍ତରତଳୁ
ଫୁଟିନି କି ? ଚିରନ୍ତନ ବାଣୀ ଶୁଭଙ୍କର,
ତୁମରି ବେଦନା ଦୁଃଖ ଟିକକ ଦେଖିଲେ
ଉଠିନି କି କମ୍ପି ମୋର ମହା ଅଭ୍ୟନ୍ତର ?

## ସାଧକର ସ୍ୱପ୍ନ

ତୁମର ପ୍ରାଣର ପ୍ରାଣ ନ ଥିଲି କି ମୁହିଁ ?
ତୁମ ବୁକୁ ଶୋଣିତର ପ୍ରତି ବିନ୍ଦୁ ତଳେ,
ସୁଖ ଦୁଃଖ ଅନୁଭୂତି ଦେଖୁଥିଲ ନକି ?
ମତେ କିମ୍ବା ଚାହିଁ ଆଜି ଏତେ ହତାଦରେ ?

କୁକୁରର ମାଙ୍କଡ଼ ପରି, ମୋ ବ୍ୟକ୍ତିତ୍ୱ ପରେ
ତୁମେ କିମ୍ବା ଆଣିଦିଅ ଗୁରୁକଷାଘାତ ?
ତୁମେ ସେଇ, ଚାହିଁଥିଲ ଅମୃତ ନୟନେ,
ଆଜି କିମ୍ବା ରହିଅଛ କରିଣ ପଶ୍ଚାତ୍ ।

ସାତ ଭଗାରିରୁ ବଳି ନିଠୁର ନିର୍ମମ
ତୁମେ କିମ୍ବା ହେଲ ଆଜି କଦ୍ଧ ମୋଢ ପରେ ?
କି ବିଷକଣିକା କିଏ ଅମୃତର ଘଟେ—
ମିଶାଇଲ, ମୋ ନୟନରୁ ଆଜି ଅଶ୍ରୁ ଝରେ ।

ଏ ଦରିଦ୍ର ଜୀବନରେ ଦିନେ ଦଣ୍ଡେ ପାଇଁ,
ସ୍ୱପ୍ନେ ଜାଗରଣେ ମୁହିଁ ନ ଥିଲି ବିସ୍ମର,
ତୁମେ ସେଇ, ଦିନେ ମତେ ପଚାରିବ ନାହିଁ;
ଭୁଲିଯିବ ମୁଖେ ମୋର ବୋଳି ଦେଇ କାଳି;

ଏ ବନ ପ୍ରାନ୍ତର ପଥ ସାଗର ସରିତ,
ଏ ସବୁରେ ଏକା ଆଜି ବୁଲିଗଲାବେଳେ,
ବୁଲି ତ ପାରୁନ ମୁହିଁ ମନ ବିନୋଦନେ
ପ୍ରତି ପଦ ପାତେ ସେଇ ସ୍ମୃତିଟିକ ଖେଳେ ।

# ସାଧକର ସ୍ୱପ୍ନ

ଏ ପରାଣୁ ବଳି ଯେତେ ଦେଇଚି ମମତା
ସେ ସମସ୍ତ ଚାଲିଗଲା କେଉଁଆଡ଼େ କାହିଁ ?
ଟିକିଏ ଟିକିଏ ଖାଲି କ୍ଷଣିକ ବିରାମେ
ତୁମ ମନ ତଳେ ଲବେ ଜାଗିଲା ତ ନାହିଁ ?

ଏକବାର ଫୋଟିଦେଲ ଫୋଟିଦେଲ ତମେ !
ମୋ ଅପଥ୍ୟ କ୍ଷତ ପାଇଁ ରଚିଲ ସଂଗ୍ରାମ !
ମୁଁ ତଳତଳାନ୍ତ ହେଲେ ଧନ ଧନ ଧରି,
ତୁମରି ଫୁଟିବ ସେହ୍ଲେ ବଜମୂର ବାଣ !!

ପୃଥିବୀର ବକ୍ଷପଟୁ ମୁଁ ନିଶ୍ଚିହ୍ନ ହେଲେ
ତୁମରି ଆନନ୍ଦ ହେବ ଫୁଟିବ କଲ୍ୟାଣ,
କାହିଁକି ମା ଏତେ ଏତେ ଅବହେଳା ମୋ' ପରେ
ଏତେ ଆପଣାର, ହେଲ ମହାଶତ୍ରୁ ସମ !!

ଆଉ ମୁଁ ତୁମକୁ ଚାହିଁ ବସିବ ତ ନାହିଁ
ଫେରଯିବ ଜୀବନର ମହାଶୂନ୍ୟ ନୀଡ଼େ ।
ସମ୍ଭାଳି ପାରିବ ରହି ? ହୁଏ ନ ପରତେ
କାବରେ ନେଇ ବଞ୍ଚିବ ମୁଁ ମହାସୃଷ୍ଟି ଝରେ ?

ଆଗକୁ ପଛକୁ ଆଉ କିଏ ଥିଲା ମୋର ?
ତୁମକୁ ହିଁ କରିଥିଲି ପରମ ଆଶ୍ରୟ,
.ଗଛ ଯେବେ କଟାହୋଇ ପଡ଼ିଗଲା ତଳେ
ରୁଦ୍ର ମରୁ ଗରଜିବ ତହିଁ ଅହରହ ।

# ସାଧକର ସ୍ୱପ୍ନ

ତୁମେ-ମୁହିଁ ଥିବା ଆଜ ଯେହ୍ନେ ଦୁଇ ଆଡ଼େ
କେ କାହାରେ ଗୃହିଁବାନ କ୍ଷଣେ ଦଣ୍ଡେ ପାଇଁ
ଜୀବନେ କି ଜାଗୁଥିବ ତୀବ୍ର ପ୍ରତିଶୋଧ ?
କା'ଉପରେ ପଡ଼ିଗଲେ କାହାର ବା ଛୁଇ !

ଏଇ ହେଲା ପରିଣାମ ଏତେ ମମତାର
ଏଇ ହେଲା ଶେଷ ଗନ୍ଧ ତୁମ ମୋ ଭିତରେ,
ମୋ ଭିତର ଉଠିଲେକ କାନ୍ଦ ଶତବାର
କମ୍ପନ ଆସେନ ଲବେ ତୁମ ବୁକୁତଳେ ?

କଠୋର ପାଷାଣେ ଯେବେ ଗଢ଼ିଥାନ୍ତି ହିଆ,
ଏ ଜୀବ ବେଦନା ଅବା ପାଇଥାନ୍ତ ସନ୍ଧ,
ପିଶାଚର ନିର୍ମମତା ଥିଲେ ଅବା ମୋର,
ଏତେ କଦର୍ଥନା ପାଇ ନୋହୁଥାନ୍ତ ଦହ ।

ମୋ ଦେହ ମନର ଶତ ସୂକ୍ଷ୍ମ ସ୍ନାୟୁମାଳା
ଲୁହା ଶିକୁଳରେ ଯେବେ ହୋଇଥାନ୍ତା ଗଢ଼ା,
ଏତେ ଦୁଃଖ ଏତେ କଷ୍ଟ ଏତେ ଯେ ଚାଞ୍ଚଲ୍ୟ
ଲବ ମାତରକେ ନାହିଁ ଛୁଉଁଥାନ୍ତା ପରା !

କବର ଅନ୍ତର ଧରି ଏ ମାଟି ଉପରେ
ମୁଁ ଚାଲି ଆସିଛି ଯେବେ ଶୈଶବୁଁ ଏ ଯାଏଁ ।
ଟିକିଏ ଆଘାତ ହେଲେ ସହି ନାହିଁ ପାରେ
ଦରିଦ୍ର କୁଟୀରେ କାନ୍ଦେ ଶିଶୁ ପରି ପ୍ରାଣେ ।

# ସାଧକର ସ୍ୱପ୍ନ

ମୋର ଏ ଯେ ଦୁର୍ବଳତା ମହା ଦୁର୍ବଳତା
ମନେ ହୁଏ ମତେ ପଙ୍ଗୁ ଦେଇଅଛୁ କରି
ଆଶ୍ଚର୍ଯ୍ୟ ମୁଁ ହୋଇଯାଏ ଦେଖି ଧରଣୀରେ
କେମନ୍ତେ ଅଛନ୍ତି ଜନେ ପାଷାଣରୁ ବଳି !

ଶ୍ୟାମଳ ସବୁଜ ବନ ପ୍ରାନ୍ତର ପରିଏ
ଦର୍ଶନ ଅନ୍ତର କା'ର ବାରେ ଛନ ଛନ,
କୁସୁମର ଗନ୍ଧ ପରି ଯିବାକୁ ପ୍ରସରି
ନିମିଷକ ପାଇଁ କେହି କରୁନାହିଁ ମନ ।

ସାଗର-ଉଚ୍ଛ୍ୱାସ ପରି ପ୍ରାଣର ମମତା
କେ କାହାରେ ଅଯାଚିତେ ଦେଉନାହିଁ ଢାଳି,
ଅନନ୍ତ ଆକାଶ ପରି ଲକ୍ଷଜୀବନରେ
କେ କାହାରେ ଗୃହୁଁନାହିଁ ହୃଦୟ ପ୍ରସାରି ।

ସୃଷ୍ଟିର ଏ ପ୍ରାଣହୀନ ଜୀବନ ଚଳେକି,
ଏତେ କଷ୍ଟ ଏତେ ବାଧା ମତେ କିମ୍ପା ଲାଗେ ?
ଏ ସୃଷ୍ଟିକୁ ପ୍ରାଣଭରି ଭଲ ପାଇବାରେ
ଏ ଦୁଃଖ ଦୁର୍ଦ୍ଦଶା କିମ୍ପା ପ୍ରତି ନିତି ଜାଗେ ?

କହ ସୃଷ୍ଟି ! କହ ମତେ କହ ବାର ବାର
କାହାରେ ମୁଁ ଦେଇଚି ବା ନିର୍ମମ ଆଘାତ
କା ଆଖିରୁ ଅଶ୍ରୁ କାଢ଼ି କାହା ଶିରେ ଅବା
କରିଚି ମୁଁ ସୀମାହୀନ ଉତ୍କଟ ଉତ୍ପାତ ।

## ସାଧକର ସ୍ୱପ୍ନ

ମୋର ଯେତ୍ଲେ ମନେ ହୁଏ ଏଇ ମାଟି ପରେ
ସକଳ ବିଭେଦ ଭୁଲି ସକଳର ସହ
ହସି ଖେଳ ବୁଲଚି ମୁଁ ବନ ବନ ଧରି
ସଭିଏଁ ମୋ ଜୀବନର ସାଥୀ ପରିଚୟ !

ସବୁରି ଐଶ୍ୱର୍ଯ୍ୟ ସୁଖ ମୋହନ ସମ୍ପଦେ
ନାଚି ଉଠେ ମୋ ଅନ୍ତର ଅନନ୍ତ ଆବେଶେ
କେହି କି ବୁଝିଇ ମତେ କଣେ ହେଲେ ଲୋକ ?
ବୁଲଚି ମୁଁ ଧରଣୀରେ କି ମଧୁ ଉଦ୍ଦେଶେ ।

ଟିକିଏ ତ ଆସିଲନ କହିଲନ ମତେ
କାହିଁକି ମୋ ପାଇଁ ତମେ ହୋଇଚ ପାଷାଣ ?
ଟିକିଏ ତ ବୁଝିଲନ କି ବିରାଟ କରି,
ମୁଁ ତୁମକୁ ଦେଖିଥିଲି ଭରି ମୋର ପ୍ରାଣ ।

ରହିଲ ରହିଲ ତୁମେ ଦୂରେ ବହୁଦୂରେ
ପ୍ରାଣର ଏକାନ୍ତ ପ୍ରିୟ ଅତି ଆପଣାର
କା' ପାଇଁ ଆନନ୍ଦ ମୋର କା' ପାଇଁ ଜୀବନ ?
କା' ପାଇଁ ଏ ଆକାଶ ଅବନୀ, ଗଛପତ୍ରମାଳ !!

# ମୁଁ ଗୋ ଶୁଣୁଥିବି କଳ-କଳ-ରବ

ମୁଁ ଗୋ ଶୁଣୁଥିବି ଜଳ-କଳ-ରବ !
ମୋର ଜୀବନର ସେ'ଯେ ବଇଭବ ।
ମୁଁ ଗୋ ସବୁଜ ବଳର ହୁଡ଼ା ତଳେ,
କାନ ପାତି ବସିଥିବି କୁତୂହଳେ !

ଶିରେ ଶୁଭ୍ର ବାଦଲ ଭାସିଯାଉ,
ଗିରି, ଚୂଳେ ଚୂଳେ କାହିଁ ଚରୁଥାଉ,
ନଈ ବହି ଯାଉଥାଉ ଦୂରୁ ଦୂରେ,
କରି ଗୁରୁଗରଜନ କୂଳେ କୂଳେ ;

କାହିଁ କୃଷକ କିଶୋରୀ ଗୀତ ତାନ,
କରୁ ଆକୁଳ ଧରଣୀ ମନ ପ୍ରାଣ ।
ଫେରୁ ଗୋରୁଗୋଠ ଦୂର ବଣ ତଳୁ ,
ଟିପା ଶବଦେ କାନନ ଦୋ ହଲୁ;

କାହିଁ ବଂଶୀ ବଜାଇ ଗାଈଆଳ,
ଛୁଟା ଟେକି ହେଉଥାଉ ନଈ ପାର,
ଦୂର ପାହାଡ଼ର ଯାଏଁ ଧାନ ଖେତ
ଥାଉ, ଉଡ଼ାଇ ସୋହାଗେ ନୀଳ କେତ ;

# ସାଧକର ସ୍ୱପ୍ନ

ମୁଁ ଗୋ ଶୁଣିଥିବ ଜଳ-କଳ-ରବ !
ମୋର ଜୀବନର ସେ ଯେ ବଇଭବ ।
ମୁଁ ଗୋ ସବୁଜ ବଲର ହୃତ୍ ତଳେ,
କାନ, ପାନ୍ଥ ବସିଥିବ କୁଞ୍ଜଦଳେ ।

ଦୂରେ ଠିଆ ହୋଇଥାଉ ତାଳବଣ,
କିବା, କେଉଁ ରାଇଜର ସେନାଗଣ !
ନଈ ଆରପାରେ ସେଇ ବଟ ତଳେ,
ଠିଆ ହୁଅନ୍ତୁ ବାଟୋଇ ଖରାବେଳେ,

କେଉଁ ପଲ୍ଲୀ କିଶୋରୀ ସୁକୁମାରୀ,
ଯାଉ, ଶାଶୁଘର ପଥେ ଚାଲି ଚାଲି,
ଛଇ ଆଗରେ ତାହାର ଚାଲିଥାଉ,
ଛଳ, କେତେ କୋଶ ବାଟ ଅଛି ଆଉ !

ଛଳେ, କୃଷକ ବାପୁଡ଼ା ଦେଉ ମଇ,
ଗୀତ ଗାଉଥାଉ କେବେ ରହି ରହି,
ଧାନ ରୋଉଥାନ୍ତୁ ଛଳେ ଶଅରୁଣୀ,
ସୁଖ ଦୁଃଖ ନିଜର ଗୁଣି ଗୁଣି !

ପିଲେ ଯାଉଥାନ୍ତୁ ଗୋ ପାଠ ପଢ଼ି,
କେତେ ଅଣ୍ଟିରେ ମୁଢ଼ି ଚୂଡ଼ା ଭରି ।
କେଉଁ ଗରିବ ଘରର ପିଲାଟିଏ
ଭୁଜା, ନାଇଁ ନିରାଶେ ବି ଚାଲିଥାଏ !

# ସାଧକର ସ୍ୱପ୍ନ

ମୁଁ ଗୋ     ଶୁଣୁଥିବ ଜଳ-କଳ-ରବ !
ମୋର     ଜୀବନର ସେ' ଯେ ବଇଭବ !
ମୁଁ ଗୋ     ସବୁଜ ବଲର ହାଡ଼ ତଳେ
କାନ     ପାତି ବସିଥିବ କୁତୁହଳେ ;

ମୋର     ଅସୀମ ଅଭାବ ରହିଛି ଗୋ !
ମୋର     ନୟନ ଲୋତକ ବହୁଛି ଗୋ !
ମୋର କେହି ତ ନାହିଁ ଗୋ ଜଣେ ସାହା !
ମୋର     ଦୁଃଖେ କରେନି କେହି ଆହା !

ମୁଁ ଗୋ     ଅସୀମ ଅଭାବ ସମୁଦ୍ରରେ,
ନିତ     ମଜ୍ଜନେ ନୀରବେ ବୁଡ଼ି ମରେ ;
ମୁଁ ତ,     ମଣିଷ ବୋଲି ଗୋ ନୁହେ ଗଣା !
ମୋର     କାହିଁବା ବଭବ ଅକଳନା ?

ମୋରେ     ନ ଲୋଡ଼ୁ କିଏସେ ବଡ଼ କରି,
ମୁଁ ଗୋ     ଦରିଦ୍ର ହୋଇ ଥାଏ ପଡ଼ି
ମୋର     ନୟନୁ ଅଶ୍ରୁ ଯାଉ ବହି,
କିଏ     ପୋଛୁ ନ ଦେଉ ଗୋ ଦୟାବହି ;

ମୁଁ ଗୋ     ଶୁଣୁଥିବ ଜଳ-କଳ-ରବ !
ମୋର     ଜୀବନର ସେ'ଯେ ବଇଭବ !
ମୁଁ ଗୋ     ସବୁଜ ବଲର ହାଡ଼ ତଳେ,
କାନ     ପାତି ବସିଥିବ କୁତୁହଳେ ।

## ସାଧକର ସ୍ୱପ୍ନ

ମୋର   ସବୁ ହୋଇଯାଉ ନିଃଶେଷ,
ମୋରେ   ନ ମିଳୁ ନୋ ହେଲେ ଭିକ ଲେଶ।
ମୁଁ ଗୋ   ଅସହାୟ ହୋଇଯାଏ ଅନ୍ତ,
ମୋର   ଯେତେ ଯାହା ଅଛି ହେଉ କ୍ଷତ,

ମୋର,   କୁଆଡକୁ ନାହିଁ ଲକ୍ଷ୍ୟ ଗୋ,
ମୋର   ଏ ଯେ ରୂପପାଗ୍ଳୀ ବକ୍ଷ ଗୋ,
ଏଇ   ସୀମାହୀନ ମହାବିଶ୍ୱରେ
ଗୀତ   ଶୁଣୁଥାଉ ମହାହର୍ଷରେ !!

ଏଇ   ଶାରଦ ଶ୍ୟାମଳ କିଆଶ୍ରୀରେ !
ପାଣି   ଲମ୍ଫ ଦେଉ ଗୋ ଧୀରେ ଧୀରେ,
ଝାଳ   କୁଳୁ କୁଳୁ କୁଳୁ ମଧୁ ତାନ
ଫୁଟି   ଆସୁଥାଉ ନୋହି ଅବସାନ !

ମୁଁ ଗୋ   କାନ ପାତି ଝାଳ ଶୁଣେ ରହି
କେଉଁ   ଅଜଣାରୁ ସେଠୁ ଆସେ ବହି !!
ମୋର   ଶିତସମ୍ପଦ ତହିଁ ଠୁଳ
ମୋର   ମଣିଷ-ଜୀବନ ଭରପୂର !

ମୁଁ ଗୋ, ଶୁଣୁଥିବ ଜଳ-କଳ-ରବ,
ମୋ   ଜୀବନର ସେ' ଯେ ବଇଭବ,
ମୁଁ ଗୋ   ସବୁଜ ବିଲର ହିଡ଼ ତଳେ
କାନ   ପାତି ବସିଥିବ କୁତୂହଳେ !!

—o—

# ମାଟି ସରଗ

ଏଠି ମୁଁ ରଚିଛି କୁଟୀର ମୋର
ସେନେହ ଶରଧା ସୋହାଗ ବନ୍ଧ
ଯେତେ ଯହ୍ନିଁ ଦେଖେ ପାହାଡ଼, ନଈ,
ଗାଆଁ ବିଲ,ବଣ, ପଡ଼ିଆ ପଥ,
ସରିତ-ସାଗର ଊର୍ମି ଶତ,
ଉପରେ ଆକାଶ ଧରଣୀ ତଳେ
କାହାରେ କେତେ ମୁଁ ସେନେହ କରେ!

ଏଠି ମୁଁ ସତତ କରଇ ଲୀଳା,
ହସି ଖେଳ ବନ ନଏ ମୁଁ ବାନ୍ଧି,
କେତେ ସଖା ସାଥି ସୋଦର ନାଇଁ !
ଊଷାର ଅଙ୍କେ ତପନ ଫୁଟେ,
ହସି ହସି ଧୀର ସମୀର ଛୁଟେ,
ରଜତ ଚନ୍ଦ୍ର ଆସଇ ଭଇଁ
ବୁକୁତଳ ଯାଏ ଗନ୍ଧରେ ଛୁଇଁ !

## ସାଧକର ସ୍ୱପ୍ନ

ଏଠି ମୋ ବକ୍ଷ ଉଠଇ ନାଚି !
ମେଘ ଯେବେ ଚରେ ପହ୍ୱାଡ଼ ଖୋଲେ,
ଫୁଲ ଯେବେ ଧୀର ସମୀରେ ଦୋଳେ,
ଇନ୍ଦ୍ରଧନୁର ବରଣ ଛଟା
ସପନ ପୁଷ୍ପ ସେ ରଚଇ କିବା ?
ଝର ଝର ଯେବେ ଝରଣା ଝରେ
ଶିଳା ବନ୍ଧୁର ତଳପ ପରେ,

ଏଠି ମୋ ଜୀବନ ଫୁଟାଏ ଛଇ,
ପ୍ରିୟଜନ ହସି କହିଲେ କଥା
ତୁଟଇ ବୁକୁର ଗଭୀର ବ୍ୟଥା !
ଅଭିମାନେ ଯେବେ ନୀରବେ ରହେ,
କାହା ଓଠ ହସି ବାରତା କହେ !
କାହା ଚମ୍ପକ ଅଙ୍ଗୁଳିର—
ପରଶେ, ମରମୁ ଫୁଟଇ ଗୀର !

ଏଠି ଅଭିଳାଷ ଲକ୍ଷ୍ୟ ମମ
କି ବିଶାଳ କିବା ମହତ ନୁହେ !
ଧାଏଁ କି ସୌମ୍ୟ ସାଧନା ସୁଏ !
ମୋ କାନେ କିଏ କି ମନ୍ତ୍ର ଦଏ,
ଦୂରେ ଦୂରେ କିଏ ନୀରବେ ନଏ
ସକଳ ଝଞ୍ଜା ଚରଣେ ଦଳି,
ମୋ ବାଟ ମୁଁ କାଟେ ସିଂହ ପରି !

## ସାଧକର ସ୍ୱପ୍ନ

ଏଠି ମୁଁ କାନ୍ଦେ ଏଠି ମୁଁ ହସେ,
କେତେ ଲୁହ ଏଥି ପଡନ୍ତି ଝରି !
ଦେଖିଚି ଏ ବଣ ପାହାଡ଼ ଦଣ୍ଡ
କେତେ କାହା ପାଇଁ ପରାଣ ମମ
ଆକୁଳେ କରିଚି ଅନ୍ୱେଷଣ!
କେତେ କାହା ମୁହଁ ଯାଏନି ଜାଣି !
ଭଲ ହୁଏ ସବୁ ଦେବପ ନଣି;

ଏଠି ଏ ମାଟିରେ ପଡିବ ଡ଼ଲ
ଆସିବ ଯେ'ଦିନ ଡ଼ାକରା କାହୁଁ,
ଲୋଡିଲେ କି ରହି ପାରିବ ଆଉ ?
କି ବିଶାଳ ମୋର ସରଗଟିଏ
ଛାଡ଼ିଯିବ ବାରେ ଭାଳିଚି କିହେ ?
ଏତେ ଆପଣାର ସରଗ ଏଇ
କେମନେ ଯିବ ମୁଁ କାହାରେ ଦେଇ ?

ଏଠି ଏ ମାଟିରେ ମୋହର ବେଣୁ
ବାଜିବନି ଆଉ ନମେଷ ପାଇଁ !
ଯାଇଥିବ କେଉଁ ସୁଦୂରେ କାହିଁ ?
ଏତେ ମରମର ସେନେହ ମାୟା
ଏତେ ସୁକମାର ଧରଣୀ ଆହା !
ରହିବ ସକଳ ରହିବ ଦୂରେ
ଫେରିବନି ଆଉ ତଳେ ଏ ପୁରେ !

## ସାଧକର ସ୍ୱପ୍ନ

ଏଠି ଏ ମାଟିରେ ଜୀବନ ଧରି,
ଯେତେ ଦିନ ଥିବ ଥାଏ ମୁଁ ରହି ।
ସକଳର ପ୍ରୀତି ସେନେହ ବହି ;
ସବୁରି ମରମେ ମରମ ଢ଼ାଳି,
ଗୋଳି ହୋଇଯାଏ ଭେଦ ନ ବାରି ।
ଯେ ଦିନ ବୁଜିବ ନୟନ ଦୁଇ
ମନେ ପଡ଼ୁଥିବ ଧରଣୀ ଭୁଇଁ !

ଛାଡି ଯିବା ପାଇଁ ହୁଏ କି ମନ ?
ପ୍ରୀତି ରେଣୁକଣା ଏଇ ମାଟିର
କେଡ଼େ ଭଲ କେଡ଼େ ଦିଶେ ରୁଚିର !
ଆଜି ଏଥି କେତେ ମମତା ଥାଏ
କାଲି ଯିବ କେଉଁ ଅଜଣା ଗାଏଁ !
କାଲି ନଉଯିବ ନୀରବେ କାହିଁ
ମୋ ପାଇଁ କିଏ କି ଖୋଜିବ ନାହିଁ ?

ଏଇ ଯେ ପାହାଡ଼ ରହିଛି ଉଭା !
ତାହାରେ ଗୁହାଁ ମୁଁ କବିତା ଗାଏ,
ଚଇତ ଫଗୁଣ ମଳୟ ବାଏ ;
ଏଇ ଯେ ସରସୀ ସଜଳ ଘାଟ,
ପକ୍ଷି କିଶୋରୀ ପିନ୍ଧି ପାଟ,
ଲଦୁପଦ ଗୁଳି କୁଟୀରେ ଫେରେ ;
ତା' ଓଠ ହାସ ମୋ ବୁକୁରେ ଖେଳେ !

## ସାଧକର ସ୍ୱପ୍ନ

ଏଇ ଯେ କ୍ଷୁଦ୍ର ପଲ୍ଲୀ ଗାଆଁ
ଆମ୍ର ବେତସ କୁଞ୍ଜ କୋଳେ
ସୁଖେ ଦୁଃଖେ ତା' ନୀରବେ ଦୋଳେ;
ଜନମକାଳରୁ ତା' ଭୁଲେ ମୋର
ପରିଚୟ କିବା ନିବିଡ଼ତର !
ତା' ପାଣି ପବନେ ଏ ଦେହ ଗଢ଼ା ?
କିଭଳି ତାହାକୁ ଭୁଲିବି ଭଲା ?

ଏଇ ଆମ ଘର ପାଖକୁ ଲାଗି,
ଗରିବ ମୂଲିଆ କୁଟୀରମାଳା
ଯହିଁ ଫୁଟେ ଲୁହ-ବେଦନା ଧାରା ;
କିଏସେ ଖାଇଚି କିଏସେ ନାହିଁ
ସାଉ ଦେଖା ସୃଷ୍ଟି ଜୀବନ ଯାଇ ।
ଅଭାବ ଭିତରେ ଜୀବନ ଚଳେ,
କା' ବ୍ୟଥା କେ ବୁଝେ ଧରଣୀତଳେ !

ତେଲ ଟୋପେ ନାହିଁ ନୁଖୁରା ବାଳ
ଚିରା ଲୁଗାଟିରେ ବରଷେ ଯାଏ,
ଦିହ ଦିଶେ ପ୍ରେତ ପ୍ରତିମା ପ୍ରାୟେ ।
ମୁଠି ଶାଗ ଜାଉ, ଲୁଣ ତୁଆଏ—
ଖାଇ କେ ଜୀବନଗୋଟି ବଞ୍ଚାଏ ;
ଘରୁ ପାଣି ଗଲେ ରହିବା ପାଇଁ
ଓଦା ଶୁଖିଆଡ଼ ଥାନ ବି ନାହିଁ ;

## ସାଧକର ସ୍ୱପ୍ନ

ସବୁର ଦୁଃଖ, ବେଦନା, ହାସ,
ଶୋଣିତେ ଶୋଣିତେ ରହିଚି ଲେଖା
ଖୋଜ ଗଲେ କାଲି ଦବନି ଦେଖା ;
କିଏ ଯେ କିଭଳି କାଟିବ କାଳ !
ବହୁଥିବ କାର ନୟନୁ ଧାର !
କା' ଲୁହ ବେଦନା ବୁଝିବ ନାଇଁ
ଯାଉଥିବ କେଉଁ ସୁଦୂରେ କାହିଁ !

କାହାର ବିଜୟ ଗରବ ଗାଥା
ହସି ହସି କିଏ କହିବ କାରେ
ଶୁଣି ପାରିବନି ଜୀବନେ ବାରେ ;
ମିଶିଯିବ କେଉଁ ଅସୀମେ କାହିଁ ?
ଝୁରି ହେବ ମାଟି ଟିକକ ପାଇଁ ;
ନ ଆସେ ଏଥି ମୁଁ ଲେଉଟି ଆଉ
ମୋ ମାଟି-ସରଗ ସୋହାଗେ ଥାଉ !

# ସୋରଡ଼ା ଘାଇର ବନ୍ଧ ଉପରେ········

ବନ୍ଧୁ ହେ ମୋର ! ସୋରଡ଼ା ଘାଇର ବନ୍ଧ ଉପରେ
ଟିକିଏ ବୁଲିବା ପାଇଁ
ତୁମରେ ମୁଁ ଥିଲି ଡ଼ାକି,
ଜ୍ୟୋସ୍ନା ରାତିରେ ତୁମେ ମୁହିଁ ଦୁଇଜଣଯାକ,
ବସିଅଛେ ଏଇ ବନ୍ଧ ଉପରେ
ଜ୍ୟୋସ୍ନାର ରେଣୁ ଏଇ ଦେହେମନେ ମାଖି;
ଅତୀତ ଆଉ ଯେ ଭବିଷ୍ୟତର ଅନ୍ତରଭରା କଥା
ପରସ୍ପରରେ କହି
ଏଇ ମୁହୂର୍ତ୍ତ ଟିକ ସୋହାଗେ ନଉଚେ ବାହି !
ମୁଁ ଯେ ଫେରିଯିବ କାଆଲି ସକାଳେ
ମୋହର କୁଟୀରପୁରେ,
ତୁମେ ଫେରିଯିବ ତୁମର କୁଟୀରେ
ଏଇ ଜନମେତର ଏ ଯେ ସମ୍ପଦ,
ଆଉ ତ ମିଳିବ ନାହିଁ !!

କେତେ ଯୁଗ ପରେ ତୁମେ କାହିଁ ଥିବ
ମୁଁ ବା ରହିଥିବ କାହିଁ !
ଦେଖା-ସାକ୍ଷାତ ଜୀବନରେ କେବେ
ନୋହିପାରେ ନୋହିପାରେ !!
ଏ ନୀଳ ଆକାଶ,

# ସାଧକର ସ୍ୱପ୍ନ

ଏ ନୀଳ ପାହାଡ଼,
ଏ ଯେ ନୀଳ ଜଳରାଶି,
ଏଇ ଯେ ଜ୍ୟୋତ୍ସ୍ନା,
ଏ ଯେ ମହାଶ୍ୱଜନତା,
ଏଇ ଯେ ମଳୟ-ଗନ୍ଧ-ଆକୁଳ,
ଏ ଯେ ଦାର୍ଶନିକର ମୁଗ୍ଧ-ଶୃହ୍ୱାଣୀଭରା-
ସୁଦୂର ଚକ୍ରବାଳ,
ଆମ ଜୀବନର ପ୍ରତି ତନ୍ତ୍ରୀରେ
କିବା ଅମୃତମାୟା
ନିମିଷ୍ ନିମିଷେ ଢାଳେ !

ସୋରଡ଼ା ଘାଇର ବନ୍ଧ ଉପରେ
ଆମେ ଯେ ବନ୍ଧୁ ଦୁଇଜଣ ଦୁଇଜଣ,
ଅନ୍ତରେ ଭରି ଅନ୍ତରଟିକ
ଦେଖୁଅଛନ୍ତି କିବା ମୁଗ୍ଧ ସପନ
ସୁନ୍ଦର ଅନୁପମ !
ଏଇ ଜୀବନର ବର୍ଣ୍ଣ ଶତାବ୍ଦୀ ପରେ
ଆମେ ମରି ହଜି ମିଶିଯାଇଥିବା
କେଉଁ ଅସୀମର ବିରାଟ ବକ୍ଷ ତଳେ !
ଆମକୁ କିଏସେ ଜାଣିବେ ତ ନାହିଁ
ଦେଖିବେ ତ ନାହିଁସତେ !
ବୁଝିବେ ତ ନାହିଁ
ଥିବ ଏ ସୋରଡ଼ା ଘାଇ,

## ସାଧକର ସ୍ୱପ୍ନ

ଥିବ ଏ ଆକାଶ,
ଥିବ ଏ ଜ୍ୟୋତ୍ସ୍ନା,
ଥିବ ଏ ବଳୟ—
ଦୂର ଦିଗନ୍ତ ପଥେ ;
କିଏ କେତେ ଆସି ସାନ୍ଧ୍ୟ ବିହାରେ,
ମନ ବିନୋଦନେ ଦିନ ନେଉଥିବେ କାଟି,
ଆମେ ଯେ ବନ୍ଧୁ ବସିଥିଲେ ଏଇ ମାଟି ଚେକିକରେ,
କାହାର ସ୍ମୃତିରେ କାହିଁକି ବା ଯିବ ନାଚି ?

ଜୀବନରଂ କେତେ ଜୟ ପରାଜୟ,
ସୁଖ ଓ ଦୁଃଖ କେତେ ମାନ ଅପମାନ ;
ତୁମେ ମୁହିଁ ଆମେ କେଉଁଠାରେ ଥିଲେ
ଗୋଟିଏ ବୃନ୍ତେ ଯୁଗଳ କଳିକା ପରି,
କିଏସେ କିଭଳି ବିଚ୍ୟୁତ ହେଲେ
ହେଲେ କେତେ ଦଇରଣ,—
ଆଜି ପଡ଼ିଯାଏ ମନେ,
ସେ ଦିନର ସବୁ କଥା,
ପଥରର ଗାର ପରି,
ରହିଚି ବନ୍ଧୁ ରହିଥିବ ସବୁଦିନେ !

ଧମକ ଉପରେ ଧମକ କିଭଳି ମେଘ ଗର୍ଜନ ପରି
ଆମରି·ଉପରେ ବୃଷ୍ଟି ସେ'ଦିନ ହେଲା,
ଆମେ କେଉଁଭଳି ବଜ୍ର ପରାଏ
ଅଚଳ ଅଟଳ ରହି

## ସାଧକର ସ୍ୱପ୍ନ

ଯାଇ ତ ନ ଥିଲେ ଥରେ !
ଆମକୁ କିପରି ଗୋଟି ଗୋଟି କରି ହତ୍ୟା ଯେ କରାହେଲା
ଆମକୁ ଛିକିଏ ବୁଝିବା ପାଇଁକି
ଆମର କିଏ ସେ ସାହା ଭରସା ବା ଥିଲା ?
ସଭିଏ ରହିଲେ ମୂକ ଓ ମଉନ ଅକର୍ମ ଶିଳା ଭଳି,
ସଭିଏ ରହିଲେ ନିଜ ସ୍ୱାର୍ଥକୁ ନିବିଡ଼େ ଯାବୁଡ଼ି ଧରି,
ସଭିଏ ରହିଲେ ମସ୍ତକ ପୋତି ନ କହି ପଦିଏ କଥା,
କାହାରି ଭିତରୁ ଅଗ୍ନିର ଝଲ ପରି ଛିକିଏ ତ ସ୍ୱାଧୀନତା
ବିଦ୍ରୋହ ହେଲେ କମେଷେ ଫୁଟିଲା ନାହିଁ !
ସବୁ ଭୟଠାରୁ ଜୀବନର ଲାଗି, ଜୀବିକାର ଲାଗି,
ଯାହାଠି ରହିଚି ଭୟ
କିବା ଶିଷସମ୍ପଦ ତାହାଠୁ ପାରିବ ପାଇ ?

ଆମେ ଫୁଲଥିଲେ ବନ୍ଧୁ ହଁଜଣ ଶିରିବନ୍ଧମ ମଦେ,
ଧରଣୀର ଯେତେ ପାପ ଅନାଗ୍ରହ ଦଳି ଠେଲି ପ୍ରତିପଦେ ;
ଅମାନିଆ ହୋଇ ଫୁଲଥିଲେ ଆମେ
ଝଡ଼ ଝଞ୍ଜାର ଭିତରେ ଭିତରେ ଖାତିରି ନ କରି କା'ରେ
ସେଇଛିକ ଥିଲା ଆମର ସାହସ ଆମର ଶକ୍ତି,
ଆମର ଯେ ତେଜବଳ,
କେତେ ଅଫୁଟ କଳିକାରେ ଆମେ
ବର୍ଣ୍ଣ ଗନ୍ଧ ଦେଇ
ଫୁଟାଇ ଫୁଟାଇ ଫୁଲଥିଲେ ଅବିରଳ !
ନାଚି ଉଠୁଥିଲା ଆମ ଅନ୍ତର ଅସୀମ ପୁଲକେ

# ସାଧକର ସ୍ୱପ୍ନ

ଜ୍ୟୋସ୍ନାର କିବା ମହାସାଗରର ପର,
ଘନ ଅନ୍ଧାର ତଳେ, ଟିକିଏ ଆଲୋକ କେଉଁଠି ଫୁଟିଲେ,
ଆମର ପରଶ ଧର ।
ଜୀବନ୍ତ କରି ଗଢ଼ି ଚାଲିବାରେ ମହା ପୃଥିବୀରେ
ଯେଉଁ ଆନନ୍ଦ ମିଳେ,
ଯେତେ ବାଧା ଯେତେ ବନ୍ଧନ ଆସୁ
ଏ ଦେହମନକୁ
ସ୍ପର୍ଶ କରେନା ତିଳେ ।
ଆମ ଅନ୍ତରତଳେ କିଏ କହିଯାଏ କାହିଁ,
"ମହାସୃଷ୍ଟିର ଆମେ ଯେ ଗୋଟିଏ ଜୀବ
ଆମେ ଫୁଟିଅଛୁ
ଅସୀମ ଜୀବନ ପାଇଁ ।
ଧକ୍କା ଉପରେ ଧକ୍କା କିଏସେ
ଆମକୁ ଦଉଡ଼ା ଦଅ,
ଆମେ ଚାଲିଥିବୁ ଧରଣୀକୁ କର
ଚିରସୁନ୍ଦର ପ୍ରିୟ ।
ନର୍କ ଭିତରେ ଫୁଟାଇବୁ ଆମେ
ସ୍ୱର୍ଗର ପାରିଜାତ,
ସେଇ ତ ଆମର ଜୀବନର ବାହାଦୁର,
ସେଥିପାଇଁ ପରା,
ମହାସୃଷ୍ଟିରେ ଗଢ଼ିଚି ଆମକୁ
ସ୍ରଷ୍ଟାର ବେନିହାତ !
ଯେଉଁଆଡ଼େ ଆମେ ମାତ୍ର ଚାଲିଯିବୁ

## ସାଧକର ସ୍ୱପ୍ନ

ଆମର ଶୋଣିତ ପ୍ରତି ବନ୍ଦୁରେ
ଜୀବନର ଲୀଳା ଖେଳାଇ ଚାଲିବୁ ଆମେ,
ତୁମ ବ୍ୟଭିଚାର ତୁମ ଅନାଚାର
ସକଳ ଦର୍ପ ଭାଙ୍ଗି ଚାଲିବୁ
ସଂଗ୍ରାମ କରି ଠାଣେ ।”
ଆମେ ଯେ ବନ୍ଧୁ ଯୁଗଳ ଜୀବନେ
ଏଇପରି ଥିଲେ ଚାଲି,
ସେ ଶିରଟିକକ ଆମର ଜୀବନେ
ସବୁ ଗଉରବୁ ବଡ଼ ଗଉରବ, ଅମୃତ ସଞ୍ଚାଳି !

ତୁମେ ତ ଆସିଲ ଡିଆଁଗି ସେ ମାଟି,
ମୁହିଁ ବ ଆସିଲି ଚାଲି,
ତୁମେ ମୁହିଁ ଥିଲେ, ସେ ଯେଉଁ କୁଟୀରେ
ଶୂନ୍ୟ ପଡ଼ିଛି ଖାଲି ।
ବାଟେ ଘାଟେ ତହିଁ ଚାଲିଗଲାବେଳେ
ପଚାରନ୍ତି କେ’ ମତେ,
“ତୁମେ ଆଉ ପିଏ
ଆସିବନି ଏଇ ପଥେ ?
ତୁମେ ଦୁଇଜଣ ଚାଲିଗଲ ଦୂରେ ଚାଲିଗଲ ! ଚାଲିଗଲ !
ମନେ ପଡ଼ୁନି ଏ ମାରୁଆ ପାହାଡ଼ ?
ମନେ ପଡ଼ୁନି ଏ ବନକନ୍ଦର ଝାଳ ନିର୍ମଳଝର ?
ମନେ ପଡ଼ୁନି ଏ ଅରକ୍ଷ ଶିଶୁଦଳ
କେଉଁ ପୁରପଲ୍ଲୀରୁ ଆସୁଥିଲେ ଏଥି

## ସାଧକର ସ୍ୱପ୍ନ

ଭ୍ରମର ଆଲୋକ ପାଇଁ ?
କିଏସେ କିଭଳି ଭ୍ରମକୁ ଠେଲିଲା ଦୂରେ ?
କି ଶିଖା ବଳବ
ଭ୍ରମ୍ ପାଖେ ଥିଲା
ଟିକିଏ ବୁଝିଲା ନାହିଁ !
ଯାହା ସୁନ୍ଦର, ଯାହା ନିର୍ମଳ, ଯାହା ଉଜ୍ଜ୍ୱଳ
ଜୀବନୀଶକ୍ତି ସୂର୍ଯ୍ୟର ତେଜପୁଞ୍ଜ ପରିଏ
ଯେଉଁଠି ରହିଛି ଭରି,
ମୂର୍ଖ ଦୁନିଆ ଲୋଟିଛି ତା' ଭୁଲେ
ସାତସଉଣୀ ପରି !"

ଆମେ ସେଇ ଦୁଇଜଣ ବସିଅଛେ
ଏଇ ସୋରଡ଼ା ଧାଇର ବନ୍ଧ ଉପରେ
ସେ ଦିନ ସେ କଥା ଶୁଣି,
ଭୁଲିବାକୁ ହେବ ଆମକୁ ଏଭଳି
ଆମର ବିରାଟ ଲକ୍ଷ୍ୟ ଠିକକ ଧରି ;
ବନ୍ଧୁ ହେ ମୋର ! ଶୁଣୁଁ ଶୁଣିଆଡ଼େ
ଏଇ ସୋରଡ଼ା ଧାଇର ବନ୍ଧ ଉପରେ ବସି
ଆକାଶ ପୃଥିବୀ ଅନ୍ତରଙ୍ଗ ଆନନ୍ଦସୁଏ
କିଭଳି ଉଠୁଛି ହସି !
ନାଚିଇ ନାଚିଇ ଫେନିଲ ଉର୍ମି
ଦୂର ପାହାଡ଼ର ଘନଜଙ୍ଗଲ ପାଦେ,
ବିରାଟ ଏ ଜଳରାଶି
ଯାଉଛି କିଭଳି ନାଚି !

# ସାଧକର ସ୍ୱପ୍ନ

ଦୂରେ ବହୁଦୂରେ ମହା ବିଜନତା
ଜ୍ୟୋତ୍ସ୍ନାରେ ଅବଗାହି,
କିଭଳି ଆମକୁ
ମୁଗ୍‌ଧ ଚକିତ
ଆଶ୍ଳେଷ ଦେବା ପାଇଁ
ସୋହାଗେ ରହିଚି ଚାହିଁ !!
"ସୁନ୍ଦର ହୁଅ ! ବିରାଟ ହୁଅ ! ଶୁଦ୍ଧ-ସ୍ୱଚ୍ଛ-ଶାନ୍ତ-ସୁବିପୁଳ ହୁଅ !
ମୁଗ୍‌ଧ ମଧୁର ଅମୃତମୟ ହୁଅ !
ଗୃହଆଡ଼େ ଖାଲି ବିଂଛୁଡ଼ି ପଡ଼
ବିସାର ତୁମର
ହୃଦୟତଳର ପୁଣ୍ୟ ପୁଲକ ସୁଅ !"
ଏଇ ବିମୁଗ୍‌ଧ ବିଜନତା ବୁକୁତଳୁ
କିଏସେ ଆମକୁ, କହୁଚ ଯେପରି ଡ଼ାକ !
"ପୃଥିବୀର ଯେତେ ଜାଳାଯନ୍ତ୍ରଣା
ସବୁ ଅପସାରି ଚାଲ !
ଆହୁରି ଆହୁରି ଚାଲ !
ଯେତେ ଦିନ ଆଉ ଧରଣୀ ଉପରେ
ରହିବାକୁ ଅଛୁ ବାକି ;
ଅନନ୍ତ ହୁଅ ! ଅସୀମ ହୁଅ ! ଆନନ୍ଦମୟ ହୁଅ !
ଆକାଶ ପୃଥିବୀ ଆଶ୍ଳେଷ କରି !
ଚାଲ ଚାଲ ତୁମେ ଚାଲ !"
ସୋରଡ଼ା ଢାଇର ବନ୍ଧ ଉପରେ ବନ୍ଧୁ ଦି'ଜଣ ଆମେ—
ଶୁଣୁଅଛେ କାନ ପାରି,
ଜୀବନର କିବା ଅମୃତ ସମାଚାର !!

## ବୋଇତ-ବାଘୁଣୀ

କି ଶୀତ ବରଷା ଖରା ସବୁଦିନ ବୁଢ଼ୀ,
କିମ୍ପାଇଁ ଏ ପଥପ୍ରାନ୍ତେ ରହିଛ ଗୋ ପଡ଼ି ?
ଶମୁଚି ଉଦରଜ୍ୱାଳା ମାଗିଯାଚି ଆଣି,
ପଇସା ଚାଉଳ ଯିଏ ଯାହା ଦେଲା ପୁଣି ;
ନ ପାଇଲେ କେଉଁ ଦିନ ଖାଡ଼ା ଉପବାସେ,
ରହୁଚ ମରିବେ ପଡ଼ି ଏଇ ଦୂବଘାସେ ;
ହେଲେ ବି ପରାଣେ ତବ ଦୁଃଖ ନାହିଁ ତିଳେ,
କି ସାଧନା ସାଧି ତୁମେ ରହିଚ ମହୀରେ !
ସେ ଚିରା ଦରବା ଖଣ୍ଡି ବିନୁ ଆନ ବାସ
ନାହିଁଟି, ଚଳୁଚ ସେ ଖଣ୍ଡିକେ ମାସ ମାସ ;
କା’ ପିଣ୍ଡା ଉପରେ କାହା ଗୁହଆର ତଳେ,
ଆଶ୍ରା ତ ନେଉନ ବୁଢ଼ୀ ତୁମେ ହେଲେ ଥରେ !
ସେ ମାଟି ଟିକକେ ନିତି ରହିଅଛ ପଡ଼ି,
ବଣ ବୁଦା ଲଟି ତହିଁ ରହିଅଛି ଭରି,
ସାପ ବେଙ୍ଗ ଟଗଭୂଇଁ ସେ’ତ ସବୁକାଳେ,
ଭୟ ନାହିଁ ସେ’ତ ତୁମ ସାଥୀ ଏ ସଂସାରେ ।

# ସାଧକର ସ୍ୱପ୍ନ

କା କୁଟୀର କଣେ ଦିନେ ଥିବ ତ ଜନମି, !
ପାଳଥିବେ କିଏ ତବ ଜନକ ଜନନୀ ;
ପ୍ରାଣର ତନୟା ବୋଲି ସେନେହ ଆଦରେ,
କୋଳେ ଧରି ଚୁମିଥିବେ ଅଧର କପୋଳେ ;
ଦେଇଥିବେ ଛିକି ହାତେ କୋରା ବା କଦଳୀ
ସେ'ଦିନ ସମ୍ପଦ ଶିଶୁ ଅଛୁ ଅପସରି ।
ଜୀବନେ ତ ଆସିଥିବ ମଧୁ ଯଉବନ,
ଦେଖିଥିବ କେତେ କେତେ ସୁନେଲି ସପନ ;
ହସିଥିବ ଓଠତଳ ଅନନ୍ତ ସରାଗେ,
କଣ୍ଠୁ ଫୁଟିଥିବ ଗୀତ ନବ ନବ ରାଗେ ;
କେଉଁ ପ୍ରିୟତମ ଲାଗି ହୃଦ-ସିଂହାସନ,
ରଖିଥିବ ପାତି ଦିନେ ମୋହନ ବନ୍ଧନ—
ଦିନୁ ଦିନ କରି କିବା ନିବିଡ଼ୁ ନିବିଡ଼,
କା ବିରହେ ନେତ୍ରପ୍ରାନ୍ତୁ ଢାଳୁଥିବ ନୀର ।
ଏ ଆଖିର ଭାଷା ଶୁଣୁଥିବ କାହା ଆଖି,
ଏ ଦେହ କା ଦେହେ ଦିନେ ଯାଇଥିବ ଲାଖି,
ଅଭିମାନେ କାହା ପାଶୁ ବଦନ ଫେରାଇ
ଆଡ଼ବାଙ୍କେ ବେଳେ ବେଳେ ରହୁଥିବ ଚାହିଁ !
ପରାଣ ପରଶମଣି କରିଥିବ କାରେ,
ଢଳ ଢଳ ଯଉବନ ପ୍ରଥମ ବିହାରେ—
ବୁଲୁଥିବ ରାଜପଥେ ଗିରି-ବନ-ତଳେ,
ହାତେ ହାତ ଭରି କବା ପୀୟୂଷ ଅନ୍ତରେ !

# ସାଧକର ସ୍ୱପ୍ନ

ସେଇ ସ୍ୱର୍ଣ୍ଣ ଅଟ୍ଟାଳର ପରେ ପରେ ତମେ,
ପଥ ଭିଖାରୁଣୀ, କେତେ ଦେଲ ଗୋ ଜୀବନେ !
ଅଧରୁ ଲଭିଲ ହାସ ନୟନୁ ଗୃହାଣୀ;
ଓଠ ପୁଟ୍ ମରିଗଲ୍ ଅମୃତର ବାଣୀ ।
ମଉଳିଲ୍ ନିମିଷକେ ଗଣ୍ଡର ଗୋଲାପ,
ବାଜି କେଉଁ ଅପଦେବତାର ଅଭିଶାପ ।
କପାଳ କନକ ଜ୍ୟୋତି ନିଭିଗଲ୍ କାହିଁ,
ଥରେ ଚୁହିଁ ଆସେ ନାହିଁ ତୃପ୍ତି ଯାହା ପାଇଁ ।
ହୃଦ-ସିନ୍ଧୁ ଆଉ ନାହିଁ ଉଚ୍ଛୁଳିଲା ଲବେ
ଗୋଟିଏ ତରଙ୍ଗ ନାହିଁ ଖେଳିଲ୍ ନୀରବେ !
ସବୁ ସିନା ଭୁଲିଗଲ୍ କେଉଁ ପରପାରେ,
ବଞ୍ଚି ରହିବାର ଦୁଃଖ ନିଭିଲ୍ କି ବାରେ ?
ଦେହ ଦେଇ ସ୍ନେହ ଦେଇ କଲ ଯା'ରେ ସାଥି,
ବୁଝିଲ କି ତୁମର ଏ ବୁକୁତଳ ତାତି ?
ମରିବା ବଞ୍ଚିବା ଆଜି ସମାନ ତୁମର
କି ଆଶା ପରାଣେ ଆଉ ଉଠିବ ମୁଞ୍ଜୁରି ?

ମରିଲେ ମରିବ ପଡ଼ି ଥିଲେ ଥିବ ପଡ଼ି,
କିଏ ଅଛୁ ତୁମର ବା ଯିବ ଦୁଃଖ କରି ?
ସେ ଲାଗି ଆଦରିଅଛ ଏଇ ତରୁତଳ
ଶୀତ, ଖରା, ବରଷାରେ କରିଛ ନିଜର !
ସାପ, ବିଛା, ବେଙ୍ଗ, ଜନ୍ଦା ପିମ୍ପୁଡ଼ିରେ ତମେ,
ସାଥି କରି ନେଇଅଛ ଏ ମହା ଭୁବନେ !

## ସାଧକର ସ୍ୱପ୍ନ

ନିବିଡ଼ ନିଶୀଥ ରାତେ ମହା ଅନ୍ଧକାରେ,
ନିଜନତା ଭୁଲେ କଥା ହେଉଥିବ ବାରେ ।
ବେଦନାର ମହାସିନ୍ଧୁ ଯାଇଚ ପାଳଟି
ଆଉ କି ରାଳେଣି ବୁଲୁ ପାରିବ କରଣ ?
ନିଜ ରାଜ୍ୟ ଗଢ଼ି ତବ ରହିଅଛ ନିଜେ
କିଏ ଅଛୁ ଯିବ ଖୁଲ ସେ ମହା ରାଇଜେ ?
ବିତାଶୀ ଅନ୍ଧାରେ କିଏ ଦିପଟିଏ ଧରି
ଶିଖା ଟେକି ମହାଉର୍ଦ୍ଧେ ପାରିବ ବା ଜଳି ?

———○———

# ଜୀବନର ପ୍ରିୟ୍ସା ଚଳକା

ବୁକୁତଳେ ମୋର ଦୁଃଖ ଯାତନା ଗମ୍ଭୀରୁ ଗମ୍ଭୀର ହେଲେ ଗୋ !
ଉଷ୍ଣ ଲୋତକ ଝର ଉଠେ ଯେବେ ନୟନରୁ ବେଳେ ବେଳେ ଗୋ !
କାହାକୁ କହିବି ମୋ ଗମ୍ଭୀର ବ୍ୟଥା
ଖୋଲିବି କା ଆଗେ ଅନ୍ତର କଥା ।
ଆସେ ତୋର ତୀରେ କହିବା ପାଇଁକି ଜୀବନର ବ୍ୟଥା ମାଳିକା
ଚଳକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟ୍ସା ଚଳକା !

ଏ ଧରଣୀ ପରେ ମଣିଷ ଯେବେଟି ମଣିଷରେ ଆଜ ଗୃହେଁ ଗୋ !
ଆପଣାର କରି ଅନ୍ତର ଭରି ଲବେ ଭଲ ନାଇଁପାଏ ଗୋ !
ଅବିଶ୍ୱାସ ଓ ସନ୍ଦେହ ଭରି
ଦେଖେନ କି ତାରେ ଥରି ଥରି କରି ?
ମଣିଷଠୁ ଆଜ ଝଡ଼ିତ ପ୍ରାଣର ଗନ୍ଧ-ମଧୁର କଳିକା ।
ଚଳକା ଗୋ ମୋର ! ଆଜନମ ସାଥି ଜୀବନରଂ ପ୍ରିୟ୍ସା ଚଳକା !

କଳ୍ପନା ଆଖି ଫେଇ ଯାଏ ଦେଖି ତୋର ତୀର ବନ ତଳେ ଗୋ !
ନେଲାଗିରି ଶିଖରୁ ଆସୁଥିବେ କେତେ ସନ୍ନ୍ୟାସୀ କୁତୂହଳେ ଗୋ
ଦେହେ ପରିଧାନ ଗୈରିକ ବାସ
ଓଠୁ ଫୁଟୁଥିବ ମଞ୍ଜୁଳ ହାସ
ସଙ୍ଗୀର ତେଜେ ଜଳ ଉଠୁଥିବ ଜୀବନ -କୁଞ୍ଜ ସାରିକା
ଚଳକା ଗୋ ମୋର ଆଜନମ ସାଥି ଜୀବନର ପ୍ରିୟ୍ସା ଚଳକା !

## ସାଧକର ସ୍ୱପ୍ନ

ଦେଖିନଏ ଆଜ ତୋହର .ଏ ତୀର ଏ ନୀଳ ଶଇଳ ଚୂଳେ ଗୋ
ହରିଚନ୍ଦନ ଗର୍ଜନ ଯେ’ ଧ୍ୱନ ଶୁଣିଲେ ଶ୍ରବଣ ମୂଳେ ଗୋ
ଗାଇଜେ ତାଙ୍କ ହୃଏ ଅନାଗ୍ରର
ଜାଗିଥିବ ବୁକୁତଳେ ହାହାକାର
ଫାଟିଯା ପାହାଡ଼ ! ଫାଟିଯା ପାହାଡ଼ ! କହୁଥିବେ ଥରଥରକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ମନେହୁଏ ମୋର ସେଦନ ଗର୍ଜନ ବୁଝିଥିବେ ମନେ ମନେ ଗୋ !
ମଣିଷ ଯେଉଁଠି ମଣିଷକୁ ଆହା କନ୍ଦାଏ ପ୍ରତିକ୍ଷଣେ ଗୋ !
ଚଷଲ୍ ନରକ ପରି ସେ ଭୁବନ
କେସନେ ଧରଇ ଖାଷଣୁ ଖାଂଷଣ,
ମଣିଷର ଆଖି ଥାଇ ସେ ଗାବେନା ବଞ୍ଚିବା କେଉଁ ଭଲକା ।
ଚିଲିକା ଗୋ ମୋର ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ଦାଗିଆ ବାଉଶ୍ରୀ ତୋର ତୀର ବାଲି ଉପରେ ଆଙ୍କି ଦେଉଳ
ଜଗନ୍ନାଥରେ କରୁଥିବ ପୂଜା ଭକ୍ତି ଦେଖାଇ ବହୁଳ ।
ଦେବତା ଜାଣେନା ଜାତି ବା ଅଜାତି
ଭକ୍ତର ଧନ ନେବେ ହାତ ପାତି
‘ନ ନେଲେ ଫେରାଇ ଆଣିବ ଗୋସାଇଁ’ କହୁଥିବ ହାତ ଯୋଡ଼ିକା
ଚିଲିକା ଗୋ ମୋର ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ସେଦନ ମଣିଷ ଥାନରେ ନଥିବ ପେଟ ପାଇଁ ବନ୍ଧୁ ଦୂରେ ଗୋ !
ଗୃହିଣୀ ତାହାର କାନ୍ଦୁ ନଥିବ ଏକାକୀ କୁଟୀର ପୁରେ ଗୋ !
ଆହୁ ତ ନଥିବ କାହା ମଲା ଶଠି
କାନ୍ଦୁ ନଥିବ ବଧୂ ବାନ୍ଧା ପିଠି,
ଧନୁ କାନ୍ଧେଁପାଇଁ ଦୂରେ ଠେଲିଦେଇ ଉଙ୍କୁଣୀ ମୁହଁ କାଳନା !
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

## ସାଧକର ସ୍ୱପ୍ନ

ସେଦିନ ମଣିଷ ସ୍ୱୈରବଜାରର ବିକ୍ରେତା ହୋଇ ଜଣେ ଗୋ
କନକ ହର୍ମ୍ୟ ତୋଳୁ ତ ନଥିବ ଗୁଣ୍ଡ ଠେକ ବଡ଼ପଣେ ଗୋ ।
ଶଠ ଅନ୍ୟାୟ ଜୁଆ ସ୍ୱୈରୀ ଚଳେ
କେତେ ଦିନ କିଏ ସୁଖ ଭୋଗ କରେ ?
ଜୀବନ ଫୁଲରେ ବିଷାକ୍ତ ରେଣୁ ରହିଅଛି କେତେ ଝଲକା !
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ସନ୍ଧ୍ୟାରେ ବାନ୍ଧି ତରଣୀ ମୁଁ ଆଜ ବୁଲଇ ତୋହର ଉରସେ
ଉଲ୍ଲସି ଉଠେ ଅନ୍ତର ମୋର ମଧୁର ମଳୟ ପରଶେ;
କଳ କଳ କଳ ଶୁଭେ ଅବିରଳ
ଚଉଦିଗେ ମୋର ଖାଲି ନୀଳଜଳ ।
ନାଚି ନାଚି ଆସେ ଦୂର ଦିଗନ୍ତୁ ସୁନୀଳ ଊର୍ମିମାଳିକା,
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ପ୍ରତି ଊର୍ମିର କଳ ବେଣୁ ତାନେ ମଧୁର ଦୃଶ୍ୟ ଛଇରେ
କଣି ହୋଇଯାଏ, ଗୃହିଁ, ଗୃହିଁ ଥାଏ, ମୁଗ୍ଧ ଆବେଶ ବନ୍ଧ ରେ!
ଚଉଦିଗେ ମୋର ଊର୍ମିର ଲୀଳା
ଦୂରେ ଗିରିବନ ପ୍ରାନ୍ତର ଶୀଳା,
ନୀରେ ତାରକିତ ନୀଳ ନଭ ନାଚେ ନୀଳ ଝୁଣ୍ଡିଆ ଝଲକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ତରଣୀ ଉପରେ ଠିଆ ହୋଇ ଯେବେ ଚଉଦିଗ ମୁହିଁ ଦେଖଇ
ବନ ପ୍ରାନ୍ତର ଆକାଶ ବତାଶ ଆପଣାର କରି ଡ଼ାକଇ;
ଡ଼ାକଇ ଜଟିଆ ଡାକେ କାଳୀଜାଇ
ଡାକେ ନଳ ବଣ ଦୂରେ ଦୂରେ ଥାଇ
ହସି ହସି ଡାକେ ଜ୍ୟୋତ୍ସ୍ନାରେ ମତେ ଲକ୍ଷ ଲହରୀମାଳିକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

## ସାଧକର ସ୍ୱପ୍ନ

ଜ୍ୟୋସ୍ନା ଧବଳ ଶାନ୍ତ ଶୀତଳ ସୁନ୍ଦର ଏଇ ରାଇଜେ
ନାଚି ନାଚି ଯାଏ ଅନ୍ତର ତଳ ଶତ ସଙ୍ଗୀତ ଗାଇ ଯେ;
ସ୍ମୃତି ଦ୍ୱୀପ ଟାପୁ ପର୍ବତେ ଗୁହିଁ
ଆପଣାକୁ ଆପେ ଭୁଲିଯାଏ କାହିଁ
କେଉଁ ରାଇଜରେ ବୁଲୁଚି ମୁଁ ସତେ ନାଚି ନାଚି ଦୋଳଦୋଳକା,
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ଜୀବନର ପରିପୂର୍ତ୍ତି ସେନେହ ଏଇ ରାଇଜରୁ ପାଏ ଗୋ !
ସକଳର ତୁଳେ ମଧୁବନ୍ଧନ ରଚି ରଚି ଆଜି ଯାଏ ଗୋ !
କଳ କଳ କଳ ଏଇ ନୀଳଜଳ
ଦ୍ୱୀପ ଟାପୁ ବନ ଶଇଳ ଶ୍ୟାମଳ
ସବୁଜ ଭିତରେ ଉଡ଼ ବୁଲେ ମୋର ଜୀବନ-କୁଞ୍ଜ-ଶାରିକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ଏଥି ବୁଲୁଥିଲେ ଜୀବନ ମରଣ ସମାନ ଗୋ ମୋତେ ଲାଗଇ
ଏଥି ବୁଲୁଥିଲେ ପୃଥିବୀ ବେଦନା ବୁକୁତଳେ ନାହିଁ ଜାଗଇ
ସପନର ଏକି ଚିର ଲୀଳା ଭୂଇଁ ?
ପ୍ରାଣେ ପ୍ରାଣେ ଦିଏ ସୁନାକାଠି ଛୁଇଁ !
ଯେସନେ ସେ କେଉଁ ଚିର ସୁନ୍ଦରୀ ନବ ଯଉବନୀ ବାଳିକା
ଚିଲିକା ଗୋ ମୋର ଆଜନମ ସାଥି ଜୀବନର ପ୍ରିୟା ଚିଲିକା !
ଆସିଚି ମୁଁ ଏଥି ଆସିଚି ମୋହର ଚିର ଈପ୍‌ସିତ ରାଇଜେ
ମନ୍ଦ ଗୁହେଁ ଓଠ ହାସେ ମଧୁ କଥା କିଏ ମୋତେ ଯାଏ କହି ଯେ ;
ସପନ ଦୋଳାରେ ଯାଏ ଦୋଳି ଦୋଳି
କାହା ବୁକୁତଳେ ହୋଇଯାଏ ଭୋଳି
କାହାରେ ମୁଁ ଆଜି ଛାଡ଼ି ପାରୁନାହିଁ ଚୁମ୍ବକ ଶିଳା ଭଳିକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

# ମାଟି ଓ ମଣିଷ

ଛାଡ଼ିଦିଅ ଛାଡ଼ିଦିଅ ଛାଡ଼ିଦିଅ ମତେ ରେ
ଚାଲିଯିବ ବସନ୍ତ ଏ ଧରଣୀର ପଥେ ରେ
ଯେତେ ଶ୍ରେଷ୍ଠ ସ୍ୱାର୍ଥ, ଯେତେ ଶ୍ରେଷ୍ଠ ବେଷ୍ଟନୀ,
ରଖନା ରଖନା ଭିଡ଼
ମାଟିର ମୁଁ ସ୍ୱାର୍ଥ, ମାଟିର ମୁଁ ସମ୍ପଦ
ବସନ୍ତର ଜୀବନ ମୁଁ
ବସନ୍ତରେ ମିଶିଯିବ ଭାସିଯିବ ସତେ ରେ
ଛାଡ଼ିଦିଅ ଛାଡ଼ିଦିଅ ଛାଡ଼ିଦିଅ ମତେ ରେ !

ଅସୀମର କେନ୍ଦ୍ରରୁ ଆସିଛି ମୁଁ ଖସିରେ
ମତେ ଭଲ ଲାଗୁନାହିଁ ଏଥି ବସି ବସି ରେ
ମୋର ଧନଜନ ଗୋପଲକ୍ଷ୍ମୀ ଏ ମଣିଷ ଓ ମାଟି ରେ
ଏହାର ଭିତରେ ନେବ ମୋ ଜୀବନ କାଟି ରେ ;
ପାରିବନି କାହାରେ ମୁଁ ଛାଡ଼ି ତ
ସମ୍ଭବ ଏ ମୋ ଜୀବନର ନାହିଁ ତ !
ସବୁଜ ଓଠରେ ମୋର ଭାଷା ରେ
ସବୁଜ ବୁକୁରେ ମୋର ଆଶା ରେ !
କିଏ କାହିଁ କାନ୍ଦୁଛି କିଏ କାହିଁ ପଡ଼ିଅଛି
ଅନାଦରେ ଅନାହାରେ କାହିଁ ରେ
ଯିବ ମୁହିଁ ତାହା ପାଶେ ଧାଇଁ ରେ ;
ମୁଁ ସବୁଜ ପାଇଁ ରେ
ଜାଗ୍ରତ ଉତ୍ଥିତ କରିଯିବ ନାଇଁରେ !! •

## ସାଧକର ସ୍ୱପ୍ନ

ମଣିଷର ଉଆସ ମୁଁ ରଚିବ ମୋ ଭିତରେ
ମଣିଷ ମୋ ବୁକୁତଳ ହୃତ୍‌ପିଣ୍ଡ ସତ ରେ !
ମଣିଷ ହସିଲେ ମୋର ହସି ଉଠେ ଦେହମନ
ପ୍ରତି ରେଣୁତଳ ରେ
ମଣିଷ ଜାଗିଲେ ମୋର ଜାଗିଉଠେ ସିଂହର ବଳ ରେ ।
ମଣିଷ ଉଠିଲେ ମୁହିଁ ଉଠିଯାଏ ଉଠିଯାଏ
ସୀମାହୀନ ଆକାଶେ
ଅନନ୍ତ ବକାଶେ !
ସୃଷ୍ଟି ମୋର ମହିମିତ ସୁନ୍ଦର ଉଜ୍ଜ୍ୱଳ
ଏ ମଣିଷ ସକାଶେ !!
ମଣିଷଠୁ ଭିନ୍ନ ମୁଁ ହୋଇ ରେ
ପାରିବନି ପାରିବନି ପାରିବନି ରହି ରେ !
ମଣିଷ ମଣିଷ ଖାଲି ମଣିଷ ମୋ ଜୀବନର
ସମ୍ପଦ ପରମ,
ମତେ ଖାଲି ଭଲ ଲାଗେ ମଣିଷର କଥାଭାଷା
ମଣିଷର ସେନେହ
ମଣିଷର ଅମୃତ ମରମ !

ମତେ କହ ମଣିଷର ସୁଖ ଦୁଃଖ ବେଦନା
ମତେ କହ ମଣିଷର ଅଦ୍ଭୁତ ସୀମାହୀନ ସାଧନା !
ମତେ କହ ମଣିଷର ଯେତେ ଯାହା ବଚନକରଣୀ
ଯାହା ଯେନ ହସିଉଠେ ମାଟିର ଏ ଧରଣୀ
ମତେ କହ ମଣିଷର ଦୟା କ୍ଷମା କରୁଣାର କଥା ହେ

## ସାଧକର ସ୍ୱପ୍ନ

ମତେ କହ ମଣିଷ  କେଉଁଠି କେବେ ଗୃଳଅଛୁ ଗରବେ
ଉନ୍ନତ କର ତା'ର ମଥା ହେ !
ମତେ କହ ମଣିଷକୁ କଏ କଆଁ ନସ୍ତୁରେ ମାଇଲା
ମତେ କହ ମଣିଷକୁ ସାତହାନମାନ କର
କଏ କାନ୍ଧେଁ ଥୋଇଲା !
କହ ମୋର କାନେ କାନେ ଦୁଃସହ
ପୀଡ଼ାବାଜ କାହାର
ମଣିଷ ହୋଇଚ  ଢନପାଞ୍ଜିରୁ ବାହାର !
ମଣିଷକୁ ଭଲପାଏ ମୁହିଁ ଭଲପାଏ ହେ
ଠିକ ନଗି ସବୁ ତାର ଜାଣିବାକୁ ଗୃହେ ହେ !
ମଣିଷଜୀବକୁ  କଏ ଶ୍ରେଷ୍ଠ କର ନେଦଖେ  ରେ ?
ଏତେ ଅପରାଧ କଏ ନଜ ଶିରେ ଲେଖେ ରେ ?
ମଣିଷର ଜୀବ ଆହା ମଣିଷର ଜୀବ ସେ
ଏ ମାଟିର ସତ୍ୟ ଓ ଶିବ ସେ !
ମଣିଷଠୁ ଛିନ୍ନ ମୁଁ  ହୋଇ ରେ
ପାଶବକ ରହ ରେ
ମୋ ଭିତରେ ବାହାରେ
ମଣିଷ ଜୀବନ ଲୀଳା ଲଟିଥାଉ  ଚରଦନ
ସୀମାହୀନ ଶୋହାରେ !!

ଏତେ ବଡ଼ ସମ୍ପଦ ମଣିଷ
ତଉଦଗେ ଅଛୁ ମୋର ଘେର ରେ !
ବୁକୁତଳେ ତାର ମୁହିଁ

## ସାଧକର ସ୍ୱପ୍ନ

ଯିବ ଖେଳ ଖେଳ ରେ !
ଏ ଜୀବନ ମୋର ସତେ
କେଡ଼େ ଭଲ ଲାଗିବ !
କେଡ଼େ ଅମୃତ ଶିଖା
ବୁକୁତଳେ ଜାଗିବ !
ପୃଥିବୀର କେଉଁ କଣେ
କେତେ ସମ୍ପଦ ଧର କିଏ ରହ୍ୱନ !
ସଭିଏ ମୋ ସମ୍ପଦ ସଭିଏ ମୋ କୋଟିନିଧି
ଏ ବିରାଟ ଧରଣୀର ସଭିଏ ତ ଅମୃତବାନ୍ଧବ !!

—*—

# ଚାଲିବୁ, କିନ୍ତୁ......

—୧—

ଜୀବନ-ପଥ ପରେ ଚାଲିବୁ ନିତି
କିନ୍ତୁ ପାଇବୁନି ସେନେହ ପ୍ରୀତି;
ଚାଲିବୁ ଚାରିଆଡ଼ ଧରଣୀ ଭୂଇଁ
ଜୀବନ ମଧୁମୟ ଲାଗିବ ନାହିଁ !
କରୁଣ ଚାହାଣୀଟି ମାରିବେ ଢାଳ,
ତୁ ଚାଲିଥିବୁ ବଣ ପଡ଼ିଆ ମାଡ଼ି ;
ଏଭଳି ଜୀବନେ କି ବିଭବ ଥାଏ ?
ଜୀବନ ମରଣ ତା' ସମାନ ପ୍ରାୟେ !

—୨—

ଜୀବନ-ପଥ ପରେ ଚାଲିବୁ ନିତି
ଯାବତ ରହିବ ତୋ' ଟିକିକ ଥିତି;
ତୋ' ମନକଥା ଅବା କହିବୁ କା'ରେ
ବୁଝିବ କିଏ ପ୍ରାଣହୀନ ସଂସାରେ ?
ସଭିଏ ହସି ଖେଳି ଚାଲିବେ ପଥେ
ସକଳ ବଇଭବେ ଶୋହି ନିୟତେ ;
ମରି କି ଯିବୁ ? ମରି ପାରିବୁ ନାହିଁ !
ଜୀଇବା ଜୀବନେ କି ମାୟା ସେ ଥାଇ !

# ସାଧକର ସ୍ୱପ୍ନ

—୩—

କିଏସେ ତୋରେ ଖୋଜେ କିଏ ବା ଝୁରେଁ ?
କା' ମଥା ତୋହ ଲାଗି ଅବା ବଥାଏ ?
ତୋ ଲାଗି ଘାସ କେରେ କେ' ଦେବ ଆଣି ?
କାହିଁକି ଦେବ ଅବା ପାଣି ଟୋରାଣି ?
ଝୁଲାରୁ ଝୁଲୁଥିବ ଦଇନ ସନ୍ଧି,
ନୀରବେ ଯାଉଥିବ ଲୋତକ ବହି ।
ମରମ ଦୁଃଖ ଥିବ ମରମତଳେ
ମରଣ ନେଇ ଯିବ କେବେ ଯେ ଥରେ

—୪—

ଫେରିଲେ ନ ଫେରିଲେ ମଞ୍ଜେ କୁଟୀରେ
କିଏସେ ଲୋଡ଼ିବାକୁ ନାହିଁଟି ତଳେ ;
ସେ କେଉଁ ବାଟେ ଘାଟେ ବା ଗଛତଳେ,
ଜୀବନ କାଳବଳେ ଝୁଲି ବା ଗଲେ,
ଟିକିଏ ଆହା ଅବା କରିବା ଲାଗି
କାହା ହୃଦୟୁ ନାହିଁ ଉଠିବ ଜାଗି ?
କି ସ୍ୱପ୍ନମାନେ ଯିବ ଜୀବନ ଛୁଡ଼ି
ଭ ଗଲେ ଶେଷବେଳେ ଜଣେ ପଗୁର !!

—୫—

ଜୀବନପଥ ପରେ ଝୁଲିବ୍ ମନ୍ତ
ବନ୍ଧୁ ତୋ' ଜୀବନର ସକଳ ଅନ୍ତ ;
କିଏ ମଠୁର ନାହିଁ ବୁଝିଲା ବାରେ
ନଳଗୋଡ଼ରେ ଦେଲା ଠାଣ ପାହାରେ ।

# ସାଧକର ସ୍ୱପ୍ନ

ସାରା ଜୀବନ ତୋର ବିଅର୍ଥେ ଯାଏ,
ତୋ ଲଗି କବି ମୁହିଁ କବିତା ଗାଏ !
ତୋରେ ଚୃହିଁଲେ ଯେତେ ପାରୁନ ଚୃହିଁ,
ତୋଲଗି କୋହ ବୁକେ ଜାଗେ କିପାଇଁ ?

—୨—

ଜୀବନ ପଥପରେ ଚୃଲିବୁ ନିତି
କି ନାରଖାରେ ଯିବ ସମସ୍ତ ବିତ !
ହାଇ ରେ ! ହାଇ ! ହାଇ ! ହାଇରେ ହାଇ !
କାହାରେ ବେଳେ ବେଳେ ଦେଉଛୁ ଚୃହିଁ ?
ମୂକ ପରାଣୁ ସିନା ଫୁଟେନ ବାଣୀ
ଚୃହାଣୀ ତୋର କରେ ପଥର ପାଣି !
ଟିକିଏ ଘାସ ଚରି ଟିକିଏ ଚୃହୁଁ,
କେ' ଅଛୁ ଯିବୁ କାହା ପାଖକୁ ଆଉ ?

—୩—

ଲୋଡ଼ୁଚୁ ବେଳେ ବେଳେ କହିବୁ ବୋଲି
କିଏ ନିଠୁର ତୋରେ କଲା ଏ ଭଳି,
ସେ କେଉଁ ଲଟା ବୁଦା ଗୋରଡ଼ା ତଳେ,
କିଭଳି ପଡ଼ିଗଲୁ ପ୍ରାଣ ବିକଳେ !
କିଭଳି ଖୋଲା ମାରି ଆଖି ତରାଟି
ପାଇଲୁ କେତେ ବାଧା ନ ପାରି ଉଠି—
କିଭଳି ଆସିଥିବୁ ଜୀବନ ଧରି,
କୋଶକ ଲଗିଥିବ ଯୋଜନ ସରି !

# ସାଧକର ସ୍ୱପ୍ନ

—୮—

ନସ୍ୱ ନଦୋଷୀର ଦୁଃଖ ସକଳ
ତାହାଠି ଡଳିଁ ତା' ଠି ମରେ କେବଳ !
ପାଷାଣ ତାହାଲାଗି ସବୁଶ ହୁଆ
ତା' ଘର ନୁହେ ଅବା ଏଇ ଦୁନଆ !
ମଲେ ସେ ମରୁ ଅବା ରହିଲେ ରହୁ
ଜୀବନେ ତାର ଅଛି କି ଅବା ମହୁ ?
ତା ଆଖି ଲୁହଧାର ପୋଛିବା ପାଇଁ
କିଏସେ ହାତ ଲବେ ବଢ଼ାଏ ନାଇଁ !

—୯—

ଗୃଳବୁ ଗୃଳଥିବୁ ନିତ୍ତ ଏପରି
କେଉଁଠି ଘାସ କୁଟା ମାରିବେ ଚରି ।
ପରାଣେ ତୋର ଅବା କି ସନମାନ ?
ଗୃଳବୁ ଧରି କିବା ମଧୁ ଧିଆନ ?
ସଭିଏ ଗୃଳନ୍ତନ୍ତି ଗୃଳବୁ ତୁହି
ତୋ' ଦୁଃଖେ ଓଦାକରି ନଖିଲ ଭୂଇଁ !
ତୋରେ କେ ବୁଝୁ ଅବା ନ ବୁଝୁ ଲବେ,
ଘଲ କି ହେବୁ ଆଉ ନିଖିଲ ଭବେ ?

—୧୦—

ଗୃଳବୁ ଗୃଳଥାଆ ଜୀବନ ଧାରା
ବୋହି ତୋ ଜୀବନର ଅସୀମ ଭରା ।
ବାଧିବ ? ବାଧୁ ସେତେ କିବା ଭାଳେଣି ?
ହୃଦୟୁ ନାଇଁ ଯେବେ ଛଳେ ତୋ ଯେନ;

# ସାଧକର ସ୍ୱପ୍ନ

ଏଇ ଆକାଶ ଏଇ ଧରଣୀ ତଳ,
ପାହାଡ଼ ଝରଣ ବନ ନଦୀ ପ୍ରାନ୍ତର—
ସବୁର କାନେ କାନେ ଯାଉଥା କହି,
ମୁଁ ଏକା ମୋ ପାଇଁ କେ' ନାହାନ୍ତି ରହି !

—୧୧—

ଗୁଳବୁ ଗୁଳଥାଅ ଘୋସାର ହୋଇ,
ଯାବତ ଅଛି ପିଣ୍ଡେ ପବନ ରହି !
ଅସୀମ ବେଦନାରେ ତୋ ବୁକୁତଳ
କଣ୍ଠରେ ଦୁହିଁ ହେଉ ଥରକୁ ଥର ।
ଯାଆନା ଯାଆନା ତୁ ଯାଆନା ମର
ଗୁଳଥା ବାନ୍ଧି ତୋର ବ୍ୟଥାର ତରୀ
ପୂରବ ତୋ' ଜୀବନ ମହାସପନ
ଜାଗିଲେ ଏ ମର୍ତ୍ତ୍ୟରେ ଝିକେ ଜୀବନ !

# ବିଶ୍ୱନାଥ ବ୍ରହ୍ମା

କ୍ଷୁଧାର୍ତ୍ତ ନମେଷେ ଅନ୍ନ ବଢ଼ାଦେଲ ବେଳେ,
ଆପଣାର ଅନ୍ନଥାଳ ପୁଲକ ଉଦ୍‌ବେଳେ,
ଆନରେ ବତରବାର ପ୍ରତଦାନ ଧର;
ତା' ଭତରୁ ବଶ୍ୱଶିକ୍ଷା ସଂପଦ ଆହର
ଚାଲବା, ଧରଣୀ ପରେ ବଜୟ ସମ୍ଭାରେ
ଏ ସକଳ ଅକୁଣ୍ଠିତେ କଏ କରପାରେ ?
ଯାହାର ଅନ୍ତର ମହା ପାରାବାର ପର
ଦୟା ଦାନ କରୁଣାରେ ନ ପଡ଼େ ଉଚ୍ଛୁଳ
ଜନମରୁ ମୃତ୍ୟୁପାଏଁ, ବ୍ରହ୍ମା ବଶ୍ୱନାଥ
ମୁଁ ତୁମରେ ହୃଦ ଭର କରେ ପ୍ରଣିପାତ
ତୁମର ଅନ୍ତର ତଳୁ ଯେ ତରଙ୍ଗ ଫୁଟେ
ଶତାଂଶୁ ଏକାଂଶ ହାୟ କାହା ବକ୍ଷପୁଟେ
ଆଜହେଲେ ଫୁଟିଥାନ୍ତା ! ସୃଷ୍ଟି ଓଠେ ହାସ
—ଦେଖିବାହିଁ ଜୀବନର ଅମୃତ ବଳାସ !

—*—

# ଜୀବନର ସତ୍ୟ

ଶ୍ରେଷ୍ଠ ବସ୍ତୁ ସୀମାହୀନ ଘଟଣା ଭିତରେ
ବୁଲୁଛି ମୁଁ, କେଉଁ ଦିନ କେଉଁ ଅନନ୍ତରେ
ମିଶିଯିବ, ନିମିଷକେ । ସତ୍ୟ ଜୀବନର
କିବା କଲ ଅନୁଭବ ? ଖେଳେ ନିରନ୍ତର
ମାଟି କୁଡଆତରେ ବସି,
ଶୟନେ ଭୋଜନେ
ସତ୍ୟ କି ଫୁଟଇ ସତେ ? ଅର୍ଥ ଅରଜନେ,
ସୌଧ ରଚିବାରେ ଅବା ଈଶ୍ୱର ଚିନ୍ତନେ
ସତ୍ୟ ହୁଏ ଅନୁଭୂତ ? କ୍ଷମତା ଆସନେ
ବସି ଚକ୍ରବର୍ତ୍ତୀ ପରି ସତ୍ୟ କିଏ ଜାଣେ ?
ଏ ସବୁ କାହିଁରେ ମୋର ଆତ୍ମା ନାହିଁ ମାନେ;
ଜୀବନର ସତ୍ୟ ଏକା ଆନନ୍ଦ ପରମ,
ବ୍ୟୋମ ବସୁନ୍ଧରା ଭରି ଅମୃତ ବନ୍ଧନ—
ଭିତରେ ପ୍ରକାଶ ତା'ର; ସେ ପ୍ରକାଶ ଲାଗି
କ୍ଷୁଧାର୍ତ୍ତ ଏ ଆତ୍ମା ମୋର ରହିଅଛି ଜାଗି !!

—*—

# ପଛକୁ ଆସିବି

କାହା କୋଳର ସଙ୍ଗାଳ ସେ କେଉଁ କୁଟୀର ଶିଶୁ,
ସବୁଜ ଏଇ ପଡଆଟିରେ ଖେଳୁଛି ଥିର ଥିର !
ବୟସ ତାର ପାଞ୍ଚ ଛଅ,
ସବୁର ଭୁଲେ ତା ପରିଚୟ !
ସତ୍ତ୍ୱକି ସେ ସିନଅ ଅବା ଦେଉତ ବୁକୁଟର ?
କାହା କୋଳର ସଙ୍ଗାଳ ସେ କେଉଁ କୁଟୀର ଶିଶୁ ।

•

ଦେଖି ସେ ମୋତେ ଖଣ୍ଡିଦୂରୁ ଧଇଲା ମୋର ହାତ
"ଯୁଆଡ଼େ ଯିବ, ଯିବ ହେ ମୁହିଁ ତୁମର ସାଥ ସାଥ"
ସେଇ ତା' ଓଠ ସ୍ୱର୍ଣ୍ଣ-ହାସେ
କହିଲା ଆସି ମୋହର ପାଶେ;
କହିଲି ମୁହିଁ "ତୁମର ଘରେ ଯିବଇଁ ଆଜ ରାତ" !
ଦେଖି ସେ ମୋରେ ଖଣ୍ଡେଦୂରୁ ଧଇଲା ମୋର ହାତ !

## ସାଧକର ସ୍ୱପ୍ନ

"ଖାଇବା ପାଇଁ କଅଣ ଦେବୁ ? ଗଲେ ମୁଁ ତୁମ ଘରେ
ଶୁଣି ତୋ ବୋଉ ବାଡ଼େଇ ମୋରେ ତଡ଼ିବ ତରତରେ" ।
"ନାଇଁ ମୋ ବୋଉ ଭାରି ଭଲ,
ଦେବ କଦଳୀ ଦୁଧ ଓ ସର,
ଆସ ଆସ ଆସ ତମେ ମୋହର କୁଲେ ଥରେ" ।
"ଖାଇବା ପାଇଁ କଅଣ ଦେବୁ ଗଲେ ମୁଁ ତୁମ ଘରେ" ।

"ଆଚ୍ଛା ତେବେ, ଆମର ଘରେ ରହିବୁ ଝିଅ ହୋଇ,
ହଁ ତୁ କଲେ ଏଇଲେ ବୋଲେ ଏଇଲେ ଯିବ ନେଇ
ନାହାନ୍ତି ପିଲା ଆମର ଘରେ
ରହିବୁ ତୁ ଲୋ ! ସୋହାଗ ଭରେ,
ବୁଲିବୁ ଆମ୍ଭ ନଡ଼ିଆ ତୋଟା ପଢ଼ିବୁ ଖଟେ ଶୋଇ,
ଆଚ୍ଛା ତେବେ, ଆମର ଘରେ ରହିବୁ ଝିଅ ହୋଇ" ।

ତୋହର ଶିଶୁ ହସ ଖେଳର ମୋହନ ମାୟା ଧର
କୁଟୀର ମୋର ଉଠିବ ନାଚ ସୁନାର ସ୍ୱର୍ଗ ଭଳ !
ହସିବୁ ତୁହି, ହସିବ ମୁହିଁ,
ହସିବ ମୋର କୁଟୀର ଭୂଇଁ,
ହସିବ ଆଜ ଜଣେ ତୋହର ହେବ ଯେ ମାଆ ପର,
ତୋହର ଶିଶୁ ହସ ଖେଳର ମୋହନ ମାୟା ଧର ।

# ସାଧକର ସ୍ୱପ୍ନ

ନିଃସ୍ୱ ମୋର କୁଟୀର କଣେ କାନ୍ଦେ ବସି ଜଣେ,
ତୋ ଭଳି ସ୍ୱର୍ଣ୍ଣ ପିତ୍ତୁଳଟିଏ ଦେଖିବ କି' ନୟନେ !
ସନ୍ଧ୍ୟା ହେଲେ ଅଶ୍ରୁଧାରେ
ସେ କେଉଁ ଶୂନ୍ୟେ ଡ଼ାକଇ ହାରେ !
"ମୋ ପରେ କଏ ନିଷ୍ଠୁର ହେ ହେଉଚ ପ୍ରତିକ୍ଷଣେ"
ନିଃସ୍ୱ ମୋର କୁଟୀର କଣେ କାନ୍ଦେ ବସି ଜଣେ ।

ତୋହର ଏଇ ସୁନାର ହାତ କୁଞ୍ଚ କୁଞ୍ଚ ବାଳ,
ତୋହର ଓଠର ଦରୋଟିବାଣୀ ପୀୟୂଷ ସମ୍ଭାର,
ଏ ଟିକି ଟିକି ଦୁଇଟି ଆଖି
ଝରଣା ଅବା ରହିଚ ଲଖି !
କେତେ ସେ ଖୋଜେ ଦିବସରାତି ହୋଇଣ ଅସମ୍ଭାଳ,
ତୋହର ଏହି ସୁନାର ହାତ କୁଞ୍ଚୁଞ୍ଚ ବାଳ ।

ସେ ତଟେ ଗୃହେଁ ସେ ତଟେ ଗୃହେଁ ସେ ତଟେ ଖାଲିଗୃହେଁ
ଦେଖିଲେ ଥରେ ତୋ ଓଠ ଚୁମ୍ବି, ଘୁଞ୍ଚବ ନାହିଁ ହାୟେ !
ମହା ସମୁଦ୍ର ଦେବ ସେ ମେଲି !
ତୋ ତଟ ବାନ୍ଧି ଉଠିବ୍‌ ଖେଳି ।
ବକ୍ଷ ତା'ର ପଡ଼ିଚି ଶୁଖି ବିରାଟ ମରୁପ୍ରାୟେ,
ସେ ତଟେ ଗୃହେଁ ସେ ତଟେ ଗୃହେଁ
ସେ ତଟେ ଖାଲି ଗୃହେଁ !

# ସାଧକର ସ୍ୱପ୍ନ

କେହ୍ନ ନାହିଁରେ କୁଟୀରେ ମୋର ! ଶୂନ୍ୟ ଗୃହଆଙ୍ଗ,
ଶୂନ୍ୟପୁରେ ଫୁଟିବ କାହ୍ନୁ ପ୍ରାଣର ମଧୁ ଧାର ?
ଜୀବନ ଗୃହେ ଚଡ଼ବ ଢ଼ଳ,
ଆପଣାଟିକ କାହାରେ ଭର,
ଚୂଷ ହୋଇ ପାଶବ ନାହିଁ ରହି ଟିକଏ କାଳ,
କେହ୍ନ ନାହିଁ ରେ କୁଟୀରେ ମୋର ! ଶୂନ୍ୟ ଗୃହଆଙ୍ଗ !

ଆଜିଠୁଁ ତୁହି ନଜର ମୋର ସବୁଠୁ ଆପଣାର !
ଗୃହାଁ ରେ ଗୃହାଁ ଟିକଏ ଗୃହାଁ ଆ'ରେ ପାଖେ ମୋର,
ଆଉଁସିଦିଏ ଏ ହାତ ଗୃନା,
ସକଳ ଭାବ ଯିବ ବା ଗୃଲ !
ଆଜି ତୁ ମୋର ବକ୍ଷ ତଳେ ଗୋଟିଏ ସୁନାଗାର,
ଆଜିଠୁ ତୁହି ନଜର ମୋର ସବୁଠୁ ଆପଣାର ।

ସ୍ୱପ୍ନେ ମୋର ପଡ଼ି ରେ ଲୋଟି ଖେଳ ଆଜି ମୋ ଭୁଲେ
ମାଆଗେ ଯାହା ମାଗୁର୍ ଆଣି ଦେବ ମୁଁ ଯାଇ ଦୂରେ !
ବୁକୁରେ ତୋତେ ମୁଁ ଯାକ ଧରି
କହିବ କହ "ମୁଁ ଭ୍ରମର"
ଶୁଣିବ ଯେତେ ବାପୁ ଗୀତ ଗାଇବୁ ମୋର ପୁରେ,
ସ୍ୱପ୍ନେ ମୋର ପଡ଼ି ରେ ଲୋଟି ଖେଳ ଆଜି ମୋ ଭୁଲେ ।

## ମାଧବର ସ୍ୱପ୍ନ

"ପଛକୁ ମୁହିଁ ଆସିବ" କହି ହାତଟି ମୋର ଧରି,
ଚାଲି ସେ ଗଲା ଚାହିଁଚ ତାରେ ଏ ଦୁଇ ଆଖି ଭରି;
ପଛକୁ ପିଏ ଆସିବ ସତେ ?
ଚାହିଁଚି ମୁହିଁ ତାହାର ପଥେ,
କେତେ କହିଁ ଲ କଥାଟି ତା'ର କବା ଲହୁଣୀ ଭରି
"ପଛକୁ ମୁହିଁ ଆସିବ" କହି ହାତଟି ମୋର ଧରି ।

ଠିଆ ହୋଇ ରହିଚ ଚାହିଁ ଚତୁର୍ଦ୍ଦିଗେ ମୁହିଁ,
ଦେଖୁଚ ମାତ୍ର ଆମୁଚ ସେହି ଶୂନ୍ୟ ଶୁଷ୍କ ଭୂଇଁ;
ଓଠରୁ ମୋର ଛୁଟୁଚ ହାସ,
ମରମେ ଖେଳ ଯାଉଚ ତ୍ରାସ
"ପଛକୁ ମୁହିଁ ଆସିବ" ସେ ତ ଯାଇଚ ମୋରେ କହି
ଠିଆ ହୋଇ ରହିଚି ଚାହିଁ ଚତୁର୍ଦ୍ଦିଗେ ମୁହିଁ !!

ଆସନା ଆରେ ଶୁଷ୍କ ପ୍ରାଣ ! ଆସନା ଆଉ ବାରେ
ପଛକୁ ସେ ତ ଆସିବ ବୋଲି କହିଚି ଶରଧାରେ,
ହାଇରେ ହାଇ ସେ ପାଖେ ନାହିଁ
ମୁଁ ଯାହା ଖାଲି ରହିଚି ଚାହିଁ !
ଅଶ୍ରୁ ଟିଏ ନଗଡ଼ ଯାହା ରହିଚି ଆଖି ଧାରେ
ଆସନା ଆରେ ଶୁଷ୍କ ପ୍ରାଣ ! ଆସନା ଆଉ ବାରେ

———○———

## ଦିନ ଦିନକର କଥା

କେଉଁ ଦିନ ତେଷ ତବ ପାଣିଧରି,
ମଧୁର ଅନୁରାଗ ନେଇ,
କହିଥିଲ ସୁକୋମଳ ବାଣୀ;
କେଉଁ ଦିନ ଦେଇଛ ଚୁମ୍ବନ ମତେ
ପ୍ରାଣରୁ ଅଧିକ କରି
ଦେଖିଥିଲ ମୋ କୁଟୀର ରାଣୀ !
କେଉଁ ଦିନ ମୋ ଦରିଦ୍ର ଜୀବନର
ଦୈନ୍ୟ ଓ ଅଭାବ ଦେଖି,
ଦେଖି ମୋର ସଂଗ୍ରାମର ବ୍ୟଥା,
ଲୁହ ସିକ୍ତ ନୟନରେ
କହିଅଛ ସାନ୍ତ୍ୱନାର କଥା;
କେଉଁ ଦିନ ଶୁଣି ମୋ ବିଜୟ
ଆନନ୍ଦେ ଅଧୀର ହୋଇ
କରିଅଛ ମତେ ଆଲିଙ୍ଗନ
କେବେ ଅବା ମୋ ଦୀର୍ଘ ବିରହେ
ଏକାକୀ କୁଟୀର କଣେ
କରିଅଛ ଅଶ୍ରୁ ବିସର୍ଜନ !

## ସାଧକର ସ୍ୱପ୍ନ

କେବେ ମୋରେ ହସାଇଚ,
କେବେ ମୋରେ ରସାଇଚ,
କେବେ ମୋରେ କରିଚ ଭର୍ତ୍ସନା,
ଏ ଜୀବନେ ଭୂଲ୍ ଯେବେ
ଥାଏ କାହିଁ କରି
କେବେ ମୋରେ ଦୂରେ ଫିଙ୍ଗିଦେଇ
ନିର୍ମମେ ନିଠୁରେ
ପୁଣି ମୋରେ ଦ୍ୱିଗୁଣ ସେନେହେ
ନେଇଅଛ କୋଳ କରେ ଧରି !
ବିଦେଶେ ବିଦାୟ ଦେଇ ଚଳିଲେ ମୁଁ,
ହେଲେ ତୁମ ଆଖି ଅଶ୍ରୁଆଳ,
ଗବାକ୍ଷ ଅଯୂନେ ମୋରେ
ସୁଦୂର ଦିଗନ୍ତେ ଚାହିଁ
ଚାହିଁ ରହି ଥାଅ
କେତେବେଳ ଯାଏଁ,
ସ୍ମୃତି ମୋର ବୁକୁତଳେ
ଆଙ୍କି ବାର ବାର !
ଅଭାଗା ମୁଁ କବିଜନ
ନଶ୍ୱର ଅନ୍ତରେ ତବ
ଆଘାତର ବହ୍ନି ଯେବେ
ଦେଇ ଥାଏ ଜାଳି,
କରିଅଛ କ୍ଷମା ମୋରେ

## ସାଧକର ସ୍ୱପ୍ନ

କିଛି ନ ବୁଝିଲ !

କେବେ ମୋରେ ଦେଇଅଛ
ସୀମାହୀନ ଉତ୍ସାହ ପ୍ରେରଣା,
ମାତ୍ରା ବଳେ
ଏଇ ମୃତ ଜଡ଼ ମୋର ଦଗ୍ଧ ଅନ୍ତର
ହୋଇଅଛି ବହ୍ନି ସମ ଊର୍ଦ୍ଧ୍ୱଗାମୀ
ଉଠିଛି ମୁଁ ଦୂର ଦୂରାନ୍ତର !
ମାନିନାହିଁ ବାଧା ଓ ବନ୍ଧନ
ସଂକଳ୍ପୀ ସୈନିକ ପରି
ଚାଲିଅଛି ଲକ୍ଷ୍ୟପଥେ ମୋର !

ଦିନ ଦିନକର କଥା,
ତା'ର ଯେଉଁ ନାହିଁ ଶେଷ !
ଅସରନ୍ତି ଉପନ୍ୟାସ ପରି
ସୁଦୂର ଅତୀତୁ ଆଜଯାଏଁ
ମୋ ଅନ୍ତର ପ୍ରତି ଅଣୁପରମାଣୁ ତଳେ,
ଲୀଳାୟିତ ଅମୃତର ବଇଭବ ଧରି ।

କେଉଁ ଦିନ ଜୋଛନା ନିଶୀଥେ
ସୀମାହୀନ ଆକାଶର ତଳେ,
ମୋର କ୍ଷୁଦ୍ର କୁଟୀର ଅଗଣେ
ମୋର କେତେ କେତେ ଡାକ
ପ୍ରେମ ଉତ୍ତରଳେ

## ସାଧକର ସ୍ୱପ୍ନ

ଚଳ୍ଚଳ ଚଳ୍ଚଳ
ଆଗୋ ପ୍ରିୟତମା
'ତୁମର ଏ ସୌମ୍ୟ ଅଙ୍ଗେ
ଜଡ଼ାଇ ଏ ଦେହ ମୋର
ଚିରଦିନ ଆଖି ବୁଜି
ପୃଥିବୀରୁ ହୁଅନ୍ତି ଅନ୍ତର ।'
ଶୁଣି ତବ ଏ ପାଗଳ ବାଣୀ
ନେତ୍ର୍ ଯେବେ ଅଶ୍ରୁ ଢାଳ
ତୁମରେ ମୁଁ ଅବସନ୍ନ
ଚୁମ୍ବିଲିଁ ରାଣି !
'ବ୍ୟଥିତ ହୁଅନା ତୁମେ
ତୁମକୁ ମୋ ରାଣ'
କେମନ୍ତେ କହିତ ମୋତେ
ନିବିଡ଼ ଆଶ୍ଳେଷ ଦେଇ
ନେଇଅଛ ଟାଣି ମୋତେ
ଦୂରେ ବହୁଦୂରେ ।
ଜୀବନ ଯେଉଁଠି ଗୁହେଁ
ସୀମାହୀନ ଆନନ୍ଦର ଗାନ ।

ଏ ଜୀବନେ କେତେ ଦୁଃଖ ।
କେତେ କଷ୍ଟ କେତେ ହାହାକାର ।

## ସାଧକର ସ୍ୱପ୍ନ

କେତେ ଅଶ୍ରୁ କେତେ ନିର୍ଯାତନା ।
ରୋଗ ଶୋକ ଦୁଃସହ ଜଞ୍ଜାଳ !
ବିପଦର କେତେ ବଜ୍ର
ଯାଇନାହିଁ ଗଳି !
ସମସ୍ତ ଭିତରେ କିନ୍ତୁ
ପ୍ରାଣର ସଞ୍ଚାଳି କରି
ରଖିଅଛ ପାରିନାହିଁ ଛୁଡ଼ !

ଜଟିଳ ଦୁର୍ଭେଦ୍ୟ ପଥ
କରିଅଛ ସହଜ ସୁଗମ,
ବିପଦରେ ଦେଇଅଛ
ବୀର ପରାକ୍ରମ,
ଅଶାନ୍ତ-ନରକେ ତୁମେ
ଫୁଟାଇଛ ପାରିଜାତ କଳି;
ସଂଗ୍ରାମେ ହୋଇଚ ଠିଆ,
ସୀମାହୀନ ସାହସର ଅଗ୍ନି—
ମୋର ବୁକୁତଳେ ଭରି !
ଏ ଧରଣୀ ପାନ୍ଥଶାଳା
ମୋର ଆନନ୍ଦର
ଲୀଳା ନିକେତନ
ତୁମରି ପରଶ ଦେଇ
ଦେଇ ତୁମ ହୃଦୟବନ୍ଧନ !

# କବିର ଜବାବ

ପୃଥିବୀର କବି ମୁହିଁ, ପୃଥିବୀର ଅନ୍ତର୍ଦାହ, ପୃଥିବୀର ଆଶା ଅଭିଳାଷ,
ପୃଥିବୀର ଅଭାବ ଓ ଅଭିଯୋଗ,
ପୃଥିବୀର ଆନନ୍ଦ, କଲ୍ୟାଣ,
ସକଳଙ୍କୁ ରୂପ ଦେବା ପାଇଁ, ଜନ୍ମ ମୋର ଧରଣୀ ଉପରେ
କିଏ ଅଛି ଏଡ଼େ ବଳିଆର ପୁଅ !
ମତେ ଏ ସବୁରୁ ଧମକ ଚମକ ଦେଇ, ଦେବ ନିବର୍ତ୍ତାଇ ?
ଏ ବିରାଟ ପୃଥିବୀ ଶୈଳ ବଣ ନଦୀ ସିନ୍ଧୁ ଉପତ୍ୟକା ଧରି
ମୋର ଏକାନ୍ତ ନିଜର,
ବନ୍ଧା ମୋର ହୃଦପୁର ପ୍ରତି ତନ୍ତ୍ରୀ ସହ
ଦରିଦ୍ର କୃଷକଠାରୁ ରାଜାଧିରାଜ ଯାଏଁ
ବିରାଟ ନଗରୀଠାରୁ ପୁରପଲ୍ଲୀ ଯାଏଁ
ସକଳର ସହ, ସବୁଠି ମୁଁ ପରିଚିତ,
ସକଳର ଆଘାତ ଓ ପ୍ରତିଘାତ
ସକଳର ଜୟ ପରାଜୟ
ସକଳର ଆପଦ ବିପଦ ସକଳର ଦ୍ୱନ୍ଦ୍ୱ

## ସାଧକର ସ୍ୱପ୍ନ

ମୋ ଭିତରେ ସୃଷ୍ଟି କରେ ଆଜ ଏକ ସୃଷ୍ଟି ପ୍ରାଣମୟ !

ଏ ମହା ଧରଣୀ ସହ ଓତପ୍ରୋତ ହୋଇ
ଏତେ ମୁହିଁ ବଳଜଡ଼ିତ,
ଏକଇ ମୁହୂର୍ତ୍ତି ଏଥୁ ଛିନ୍ନବୃନ୍ତ ହୋଇ ରହିଯିବା
ମୋହ ପକ୍ଷେ ଅଶାବ ଦୁଃସହ !
ପୃଥିବୀ ହସିଲେ ମୁହିଁ ହସେ, ପୃଥିବୀ କାନ୍ଦିଲେ ମୁହିଁ କାନ୍ଦେ,
ପୃଥିବୀ ଛିନ୍ନଭିନ୍ନ ହୋଇଗଲେ କେଉଁ ରାକ୍ଷସର ଅନାଗ୍ରହ ଧରି
ତାଣ୍ଡ ଉଠେ ଅନ୍ତରତଳ ତପ୍ତ ଲୌହଖଣ୍ଡ ପରି;
ପୃଥିବୀର ଅନ୍ତରେ ଅନ୍ତରେ ବୋଳିଦେବା ପାଇଁ
ଜୀବନର ବିଦ୍ୟୁତ ଚମକ
ସୃଷ୍ଟି ମୋର; ମୋତେ କେ ପାରିବ ରୋକ ?
ଖାତିର କରେନି ମୁହିଁ କାହାର ଧମକ !
ମତେ ତମେ ଜେଲ ଦେବ ? ମୋତେ ତୁମେ ଜୋରିମାନା କରି
ମୋ ଇଜ୍ଜତ ସନମାନେ ବୋଳିଦେବ ଘନକୃଷ୍ଣ ମସୀ ?
ମତେ ତୁମେ କରିବ କଅଣ ?
ମୁଁ ଯେ କବି ପୃଥିବୀର ଆତ୍ମା ଅବିନାଶୀ !!

ମତେ ତମେ ଏ ସାମାନ୍ୟ ଗୃହକୋଣ ଖଣ୍ଡ କରୁ
ବାହାର କରିଦେଇ,
ବହିଷ୍କୃତ କରିଦେବ ପଥର କାଙ୍ଗାଳ ?
ମାରିଦେବ ମୋ ଭିତରୁ ଯେଉଁ କବିତାର କଳତାନ ଝର ଝର ଆସେ
ଅଥବା ଓ ପଙ୍କ ପରି ପୃଥିବୀରେ ରହିଥିବ ?

## ସାଧକର ସ୍ୱପ୍ନ

ନେତ୍ର ପ୍ରାନ୍ତୁ ଝରୁଥିବ ଶତ ଅଶ୍ରୁଧାର ?
ତୁମରି ଏ ଷଡ଼ଯନ୍ତ୍ର, ତୁମରି ଏ କୁଟିଳ ମନ୍ତ୍ରଣା, ତୁମରି ଏ ଅନାଚାର
ମୋ ଭିତରେ ସୃଷ୍ଟି କରିବ ଯେ ଝଡ଼,
ତା' ଭିତରେ ତୁମେ କେଉଁଠି ବିଲୀନ ହେବ,
ମିଳିବନି ସତ୍ତା ଯେ ତୁମର,
ମୁହିଁ କିନ୍ତୁ ରହିଥିବି ବିରାଟରୁ ବିରାଟ ହୋଇ ଯୁଗଯୁଗାନ୍ତର !

ପଥର କାଙ୍ଗାଳ ମତେ କରିଦେବା
ହୋଇପାରେ ତୁମ ପକ୍ଷେ ସହଜ ସୁଗମ,
ମଥାରୁ ମୁକୁଟ ମୋର ପାରିବା ଖସାଇ
ତୁମ ପକ୍ଷେ ସାଧ୍ୟାତୀତ ବିଷମରୁ ବିଷମ !
ମୋରେ ତୁମେ ସୀମାତୀତ ହଇରାଣ କରିପାର
ରାକ୍ଷସର ଆସ୍ପର୍ଦ୍ଧା ଦେଖାଇ
ଧରଣୀର ରାଜପଥ ପରେ,
କିନ୍ତୁ ବସିଛି ମୁଁ ଯେଉଁ ସିଂହାସନ ପରେ
ପାରିବନି ମୋତେ ଏକ ବିନ୍ଦୁ ବି ଘୁଞ୍ଚାଇ
ବସିଥିବି ସୀମାହୀନ ଗୌରବର ପୂର୍ଣ୍ଣ ଆଡ଼ମ୍ବରେ !

ଅନନ୍ତରେ ସ୍ଥିତି ମୋର, ଅନନ୍ତରେ ଗତି ମୋର,
ଅନନ୍ତରେ ଲୀଳା ଖେଳା ମୋର,
ଅନନ୍ତରେ ଅମୃତ ପ୍ରୟାଣ ମୋର
ଅନନ୍ତର ପଜାରି ମୁଁ ଜନ୍ମ ଜନ୍ମ ଧରି,

# ସାଧକର ସ୍ୱପ୍ନ

ମୁଁ ଯାହା କହେ ଯାହା ଲେଖେ ଯାହା ଗାଏ—
ସେ'ସେ ସତ୍ୟ, ନିରାଟ ନିଠୁର ସତ୍ୟ,
କଳ୍ପନାର ଯାଦୁସ୍ପର୍ଶ ଅଙ୍ଗେ ଅଙ୍ଗେ ବୋଳି;
ମୋର ଯେବେ ସୃଷ୍ଟି ହୋଇ ନ ଥାନ୍ତା ଏ ପୃଥିବୀ ଉପରେ,
ଅନନ୍ତ ଅନୁଭୂତିର ସୁବିପୁଳ ଅଧିକାର
ମୋର ଯେବେ ନାହିଁ ଥାନ୍ତା
ଏ ବିରାଟ ବସୁନ୍ଧରା ପାଇଁ,
ତୃଣ ପରି ଫୁଟି ଯେବେ କେଉଁ ଅଜ୍ଞାତ କୋଣରେ
ତୃଣ ପରି ଯାଆନ୍ତି ମିଳାଇ,
ଉପରେ ଥାଆନ୍ତା ଏ ଆକାଶ, ତଳେ ଥାନ୍ତା ଏଇ ବସୁନ୍ଧରା,
କିନ୍ତୁ ସୀମାହୀନ ଜନତା ଭିତରେ
ଜୀବନର କଳତାନ ଯାଇଥାନ୍ତା ମରି !!
ଜୀବନ୍ତ ପୃଥିବୀ ନ ହୋଇ
ନିର୍ମମ ନିଠୁର କେତେ ଗୁଡ଼ାଏ ସଇତାନର
ହୋଇଥାନ୍ତା ଇଏ ଏକ ପ୍ରିୟ ରସସ୍ଥଳୀ !

ଏଇ ମହା ପୃଥିବୀରେ ଜଣେ ଅତ୍ୟାଗୃହିତର—
ସୀମାହୀନ ବେଦନାରେ
କାନ୍ଦି କାନ୍ଦି ଯେବେ ମୁହିଁ
ସର୍ବସ୍ୱାନ୍ତ ହୋଇଯାଏ,
ତାହା ପାଇଁ ପନ୍ଥା ଖୋଜି ଖୋଜି
ତାହାର ଅନ୍ତର ବାଣୀ

## ସାଧକର ସ୍ୱପ୍ନ

ସଙ୍କଳର ମର୍ମେ ମର୍ମେ ବାନ୍ଧ କରି କରି
ମୁହିଁ ଯେବେ କର୍ମାଚନା ପାଏ,
ସେ ଯେ ମୋର ପରମ ସୌଭାଗ୍ୟ,
ସେ ଯେ ମୋର ପୁଣ୍ୟ ରାଜଭୋଗ,
ସେ ଯେ ମୋର ଜୀବନର ଅନନ୍ତ ଗୌରବ !!
ସେ ସମ୍ପଦଟିକୁ ଧରି
ହସି ହସି ଅନନ୍ତ ସୋହାଗେ
ପାରିବ ମୁଁ ଗୁଲ, ମୋର ଗନ୍ତପଥ ଆପେ ଆପେ ଗଢ଼ି;
ମୁଁ ଯେବେ ହୋଇଥାନ୍ତି କେବଳ ନଜର ମୋର
ବାଧନ୍ତା ବାଧନ୍ତା ମୋରେ
ଶତ ଓ ସହସ୍ର ଗୁଣ ବାଧନ୍ତା
ହୃତ୍‌ପିଣ୍ଡର ସକଳ ସ୍ପନ୍ଦନ ଥମିଯାନ୍ତା ମୋର
ପଡ଼ଯାନ୍ତି ତଳେ !
କିନ୍ତୁ
ଅନନ୍ତ ପ୍ରାଣର ମୁହିଁ ବିରାଟ ଆଧାର
ଅନନ୍ତ ଭିତରେ ମୁହିଁ ଛନ୍ଦହୋଇ ରହିଅଛି ଯୁଗଯୁଗାନ୍ତର
ଭଗ୍ନ ପ୍ରାଣ ନର୍ତ୍ତଜାକୁ ହୋଇ ପଡ଼ିବା
ମୋହ ପକ୍ଷେ ଅସମ୍ଭବ ଅଟେ ।
ବିରାଟ ଏ ମହାବିଶ୍ୱ ଧରି ରଖିଅଛି ମତେ
ମୁଁ ତା'ରେ ରଖିବି ଧରି ପ୍ରତି ମୁହୂର୍ତ୍ତରେ
ବାଡ଼ି କିବା ଅମୃତ ଶକତି !

—*—

## ଧୂଷୁରି ଗୋଠର ବାଳକା !

ନଇଁଲା ସନ୍ଧ୍ୟାରେ ଧୂଷୁରି ଗୋଠ ଧରି,
କୁଟୀରେ ଫେରିଯାଏ ସେଇ ସେ ବାଳକାଟି !
କୁଟୀର ପାଖେ ମୋର ଟିକିଏ ଠିଆ ହୁଏ,
ବଳକା ଭାତ ମୁଠେ ମୁଁ ଯେବେ ତା’ରେ ଦିଏ,
ତା’ କାନଟିକ ପାତି
କେମନେ ଖାଇ ବସେ,
ଓଠରେ ହସଟିଏ
କେମନେ ଫୁଟି ଦିଶେ !
କା’ ଘର ସଙ୍ଗାଳି ସାଥିରେ ନାହିଁ ତାର
କେହି ତ ଜଣେ ସାଥୀ
କୁଟୀରେ ଫେରିଯାଏ
ସେଇ ସେ ବାଳକାଟି !

ନ ଥାଏ ଯେଉଁ ଦିନ ବଳକା ଭାତ ମୋର,
ଆସି ସେ ଠିଆ ହେଲେ କୁଟୀର ପାଖେ ପାଖେ,
ମନା ମୁଁ କରିବାକୁ ଲୋଡ଼ୁଚେ ନାହିଁ ଜଳ,
ବିରାଟ ଆଶା ତା’ର ନିମିଷେ ଭାଜି ଯିବ !!
ଆମ୍ବ କଦଳୀ ବା ସରାଗେ କିଣି ଆଣି
ତା’ ହାତେ ଦେଇଦିଏ ତା’ ମନ କଥା ଜାଣି ;
ସରାଗେ ହସି ହସି କୁଟୀରେ ଫେରିଯାଏ

# ସାଧକର ସ୍ୱପ୍ନ

ଧୂସର ଗୋଠ ଧରି
ମୁଁ ବସି ଦେଖୁଥାଏ
କି ମଧୁ ସମ୍ପଦ
ତା' ଟିକି ବୁକୁତଳେ ଉଠୁଚି ଥରି ଥରି !

ବହୁତ ଦିନ ପରେ ଛାଡ଼ି ସେ କୁଟୀର ମୁଁ,
ସୁଦୂରେ ଗଲି କାହିଁ,
ଆନ କେ ବସା କରି ବନ୍ଧୁଜନ ଧରି
ରହିଲେ ସେଠି,
ମୁଁ ତ କିଛିହିଁ ଜାଣି ନାହିଁ !
ଦିନେ ମୁଁ ସନ୍ଧ୍ୟାରେ
ଦେଖିଲି ପଥପାରେ
ଧୂସର ଗୋଠ ଧରି
ଫେରୁଚି ବାଳକାଟି
ସେଇ ସେ କୁଟୀରର କାନ୍ଥ ବାଡ଼େ ଗୃହିଁ
ଖୋଜୁଚି କାହାରେ ବା
କହ୍ନ ଫେଇ ପାଟି !
ନିଆଶା ଲୁହଟିଏ
ଲୋଚନୁ ଝରି ଝରି
ଧରଣୀ ତଳେ ଅବା
ମରିବେ ଯାଏ ପଡ଼ି;

## ସାଧକର ସ୍ୱପ୍ନ

ସେ ଲୁହଟିକ ପୋଛୁ ନ କହ କାରେ କିଛୁ
ଫେରୁତ କି ଉଦାସେ
ସେଇ ସେ ବାଳକାଟି,
ଏଭଳି କେତେ ଆହା ବିଜନ ସନ୍ଧ୍ୟାରେ
ତା' ଟିକ ବୁକୁତଳ
ଯାଉ ତ ଥିବ ଫାଟି !!

ଦେଖି ତ ଥିବ ସେଇ କାନ୍ଥ ବାଡ଼ ମାଟି,
ଦେଖି ତ ଥିବ ସେଇ ଘୁଷୁରି ଗୋଠ ଗୋଟି,
ଦେଖି ତ ଥିବ ସେଇ ପାହାଡ଼ ଲଟାବୁଦା,
ତା'ଟିକ ଜୀବନର ଥିବ ସେ ଟିକସୁଧା !
ଜୀବନେ ଏଇପରି
ଝରିବେ କେତେ ଲୁହ
କାହାର ବହିଯାଏ ?
କିଏ ସେ କେଉଁ ଭଳି
କେଉଁଠି ଆସେ ଯାଏ !
ସେଇ ସେ ବାଳକାଟି
ମୋହର ମନେ ଥାଏ
ମୁଁ ତାର ମନେ ଥିବ
ଜୀବନ ଶେଷ ଯାଏ !!

—o—

## ବଞ୍ଚିତର ବାଣୀ

—୧—

ଜୀବନେ ଯେତେ ଯେତେ ସେନେହ ଦେଇଥିଲ
ନଜର କରିଥିଲି ମୁହିଁ,
ସବୁ କି ହେଲା ସତେ ମିଥ୍ୟା ଛଳନାର
କଜଳକଳା ପୋଡ଼ା ଭୂଇଁ ?
ନିସୃତ ଯାଉଥିଲି ତୁମରି କୁଟୀରେ ମୁଁ
ପରାଣ ଚରସନେ ନିତି,
କହି ମୁଁ ଯାଉଥିଲି, ମନର ବ୍ୟଥାମାନ,
ପ୍ରାଣର ସୁଖ ଦୁଃଖ ପ୍ରୀତି;
ମତେ ମୁଁ ଦିନେ ହେଲେ ଲୁଚାଇ ନ ଥିଲି ତ
ତୁମରି ପାଖେ ପାଖେ ରହି,
ସରଳ ସମ୍ପଦେ ମୁଁ ଫୁଟି ଉଠୁଥିଲି,
ଫୁଟାଇ ମୋର ମଧୁ ଛଇ ;
ଆଖିରୁ ଲୁହ ଦେଇ, ଓଠରୁ ଭାଷା ଦେଇ
ମମତା ମନତଳୁ ଢାଳି ;
ତୁମକୁ କରିଥିଲି ନିଜରୁ ନିଜର ମୁଁ,
ଶେଷକୁ ଦେଲ ମୋରେ ଗୁଡ;—

## ସାଧକର ସ୍ୱପ୍ନ

—୨—

ଛଳନା ଛଳାଛଳେ ସିକ୍ତ ଏ ଧରଣୀ
ନଥିଲି ନଥିଲି ମୁଁ ଜାଣି,
ବାଧୁଛି ମତେ ଆଜ ବାଧୁଛି ବହୁବାର
ତୁମର ଏ କୁଟିଳ ବାଣୀ;
ଟିକଏ ବୁଝିଲନି ? ଟିକଏ ଦେଖିଲନି ?
ଟିକଏ ଶୁଣିଲନି ହେଲେ
ତୁମକୁ ପ୍ରାଣ ଦେଲି ତୁମକୁ ହୃଦ ଦେଲି
ଖାଲିକୁ ଠେଲି ଦେଲ ମୋତେ !
ପାରୁନି ସମ୍ଭାଳି, ବାଧୁଛି ବେଶୀ ବେଶୀ
ନେତ୍ରୁ ଲୁହ ପଡ଼େ ଖସି,
କାନ୍ଦିଲି ମର୍ମମେ କାନ୍ଦିଲି ନିସ୍ୱନରେ
ମୁହେଁ ମୋ ବୋଳି ଦେଲ ମସୀ !
ଜୀବନେ ଯେତେ ଯେତେ ମାଧୁରୀ ଧଆନଆ
ସବୁର ହେଲା ଅବସାନ,
ମୁଁ ଆଜ ନୁହେ ତବ ଚରଣ ସର୍ମ୍ପଦ,
ଆନରୁ ବଳି ମୁହିଁ ଆନ !!

—୩—

ମୋର ଏ ତରଣୀଟି ଭାସିବ ଏକା ଏକା
ଆଜି ଏ ଜଳଧିର ଜଳେ,
ତୁମକୁ ଖୋଜୁଥିବ ତୁମକୁ ଡାକୁଥିବ,
ନ ଶୁଣି ଥିବ ତୁମେ ଦୂରେ ?

# ସାଧକର ସ୍ୱପ୍ନ

ପାରିବ ତୁମେ ରହିବ, ପଥର ବୁକୁ ବହିବ ?
ପାରିବ ପାରିବ ତ ତମେ,
ପାଷାଣ ପାଖେ କାହିଁ ପ୍ରାଣର ଦିଆନିଆ ?
କବିତା ବୁଝେ ସେ ବି କ୍ଷଣେ ?
ପାଷାଣ ପାଲଟିଛ ଜୀବନଟିକି ମାରି,
ହାଇରେ ! ହାଇ ! ହାଇ ! ହାଇ !
କାହାକୁ ଭଲ ଲାଗେ ବିଜନ ମରୁ ପରି
ନିଭୃତ ପଡିଥିବା ପାଇଁ ?
ଆଜି ଏ ଦୁର୍ବହ ଜୀବନ-ଜାଳାଟିକି
ମରମେ ମରି ମରି ଯାଏ,
କାହାକୁ କହିବ ସେ କାହାକୁ ଚାହିଁବ ସେ
ଧରାରେ କା'ରେ ନାହିଁ ପାଏ !!

—୪—

ମୁଁ ଶ୍ରେଷ୍ଠ କବିଟିଏ ନିଖିଳ ଧରଣୀରେ
ସଭିଙ୍କୁ ଦିଏ ସନମାନ,
ସଭିଙ୍କୁ ଆପଣାର ବୁକୁରେ ତୋଳି ନିଏ,
କାହାକୁ ନାହିଁ କରି ସାନ;
ସବୁରି ଆଖି ଲୁହେ ସିକ୍ତ କରି ଆଖି
ସଭିଙ୍କୁ ଚାହିଁ ରହିଥାଏ,
ସବୁରି ଗଉରବେ ଉଛୁଳି ଉଠେ ମୁହିଁ
ଅସୀମ ପାରାବାର ପ୍ରାୟେ !
ସବୁରି ଜୀବନର ଘାତ ଓ ପ୍ରତିଘାତ,

# ସାଧକର ସ୍ୱପ୍ନ

ମୋହର ବୁକୁତଳେ ବାଜେ,
ସବୁର ଅନ୍ତର-ମୋହନ ହାସଟିକ,
ମୋ ଓଠେ ଦୁଇଗୁଣ ରାଜେ !
ପରରୁ ପର କରି ଫିଙ୍ଗି ଦେଲ ମତେ,
କହିବି କାହାକୁ ବା ଯାଇ !
ଅସୀମ ଶୂନ୍ୟେ ମୁଁ ହତାଶ ନୟନରେ
ନୀରବେ ରହିଥିବି ଚାହିଁ !!

—o—

ବନ୍ଧୁ ବୋଲି ତମେ ମୋର ଏ ବୁକୁତଳେ
କରିବ ନାହିଁ ଅନୁଭବ,
ଯିବନି ଯିବନି ମୁଁ ତୁମର ସେ କୁଟୀରେ
ପରାଣେ ଭରି ଗଉରବ !
ନିଃସ୍ୱ ଏ ମରମ ନିବିଡ଼ ବେଦନାରେ
ବନ୍ଧ କେବେ ହୋଇଗଲେ,
ଯିବନି ଯିବନି ମୁଁ ତୁମର ପାଶେ ସଖା !
ଥିବି ମୁଁ ପଡି କଲବଲେ;
କାହିଁକି କାହିଁକି ମୁଁ ତୁମକୁ ଭାଳି ହେବି,
ମୋହର ଯାବାର ପଥେ
ଏକାକୀ ଚାଲି ଚାଲି ମୁଁ ଚାଲିଥିବି ପରା
କାହାର ମୁହିଁ ନୁହେ ସତେ ?
'କାହାର ମୁହିଁ ନୁହେ ? ମୋହର ନୁହେ କେହି'?
ଭିନ୍ନ ଏଥି ଜଣୁ ଜଣେ !

## ସାଧକର ସ୍ୱପ୍ନ

ବିଦୁର ଦେଲାବେଳେ ଅଶ୍ରୁ କାହିଁପାଇଁ
ନୟନେ ଜାଗେ ପ୍ରତିକ୍ଷଣେ !

—୭—

କାହାକୁ ନେଇ ଆମେ କାହାକୁ ଧରି ଆମେ
ଭୁଲିବା ଏତେ ଏତେ କାଳ ?
କାହିଁକି ଆମେ ଏଥି ଆସିଛେ ଜଣେ ଜଣେ
କେ ଯେବେ ନୁହେ ଏଥିକାର ?
କେ ଯେବେ କାହା ପାଇଁ ଢାଳିବ ନାହିଁ ଲୁହ
ଅସୀମ ବେଦନାର ତଳେ,
କା ଗଉରବେ କିଏ ଉଲୁସି ନ ଉଠିଲେ,
ଜୀବନ କାହିଁ ଧରି ପରେ ?
ଜଣିକୁ ଜଣେ ଛୁଇଁ ପାରିବ ଏଥି ରହି
ଗୋଟିଏ ନିମେଷ କି ସତେ ?
କୋଟିଏ ଜୀବନର ପରଶ ବାଜିନି କି
ଜଣକ ଭୁଲିବାର ପଥେ ?
କାହାର ମୁହିଁ ନୁହେ, ମୋହର ନୁହେ କେହି
ଭିନ୍ନ ଏଥି ଜଣୁ ଜଣେ
ବିଦୁର ଦେଲାବେଳେ, ଅଶ୍ରୁ କାହିଁପାଇଁ
ନୟନେ ଜାଗେ ପ୍ରତିକ୍ଷଣେ !

## ସେ'ତ ମୋହରି ସାଥି

ସେ'ତ ମୋହର ସାଥି ମହାଧରଣୀ ପରେ
ତା'ରେ ଆଡ଼େଇ ଦେଇ, ମୁଁ ତ ନପୂଚ ମରେ !
ତା'ର ବନ୍ଧୁ ମୁହିଁ, ତା'ର ପ୍ରିୟ ଯେ ମୁହିଁ
ମୁଁ ଗୋ ଗୁଳିଚ କେଉଁ ଦୂର ଅଜଣା ଭୂଇଁ ?

ମୁଁ ଗୋ ଯୁଆଡ଼େ ଯାଏ ମୋର ଶାନ୍ତି କାହିଁ ?
ଯେବେ, ଟିକଏ କ୍ଷଣ, ସେ ମୋ ପାଖରେ ନାହିଁ;
ତା'ର ପରଶ ବ୍ୟଥାଟିକ ମତେ ହିଁ ଲାଗେ,
ତାରେ ଫିଙ୍ଗିଦେଲି କେଉଁ ଜଳଧି ସ୍ରୋତେ !

ତା'ରେ ବକ୍ଷ ଖୋଲି ନାଇଁ କହିଲି କଥା
ତା'ରେ ଫିଙ୍ଗିଦେଲି, ଦେଇ ଦାରୁଣ ବ୍ୟଥା !
ସେ'ତ କାନ୍ଦୁଅଛି ଖାଲି ଅଶ୍ରୁ ଢାଳି
ମୁହିଁ ଦେଖୁଚି ଜଳ ଜଳ ନୟନ ବାଡ଼ି ।

ତା'ରେ ଚରଣେ ଠେଲି ଦେଇ ଗୁଲିଲି ଏକା
କାହିଁ ପାଇବି ବୋଲି ମଧୁ ମୋହନ ରେଖା;
କାହିଁ ଅଛି ତ ହାୟ ମତେ ମିଳିଲା ନାଇଁ
ମୋର ସବୁ ତ ଅଛି ଖାଲି ତାହାର ଠାଇଁ ।

## ସାଧକର ସ୍ୱପ୍ନ

ସେ ଯେ ହୃଦୟ ଭରି ମତେ ସେନେହ ଦିଏ
ତାକୁ ଚରଣେ ଦଳିଦେଲି କି ଭଲ କହେ ?
ସେ'ତ ମୋହର ସାଥି ସେ'ତ ମୋହର ସାଥି
ତା'ରେ ଦେଖୁଚ କିଆଁ କରି ଭିନ୍ନ ଜାତି !

ନିଭି ଯାଇଚି ଜ୍ୟୋତି ମୋର କପାଳତଳୁ
ମୋର ବକ୍ଷ ପାଲଟିଛି ଭୀଷଣ ମରୁ !
ମୋର ଭିତରେ ମୁହିଁ, ଯେଉଁ ଟିକିକ ଖାଲି
ମରି ଯାଇଚି ତା'ର ସବୁ ଅନ୍ତ ନାଡି ।

ସେଇ ଶାନ୍ତି ଦବ, ସେଇ ସରାଗ ଦବ,
ମୋର ଆନନ୍ଦର ସେଇ କେନ୍ଦ୍ର ହବ;
ତା'ରେ ଛୁଡିବି ନାହିଁ ତା'ରେ ଛୁଡିବି ନାହିଁ
ମୋର ଜୀବନ ଗୋଟି ଖାଲି ତାହାରି ପାଇଁ ।

ମୁଁ ଗୋ, ମୋହଠି ଆଜି ନାହିଁ ଗୁଡ଼େଇ ହେବି
ମୋର, ସମସ୍ତ ମୁହିଁ ତାହାରେ ଦେବି,
ତା'ର ପରଶ ପାଇ ଯିବି ସର୍ଗେ ଫିଟି
ମୁଁ ଯେ ତାହାର ସେ'ଯେ ମୋର ପରାଣପ୍ରୀତି ।

———o———

## ବିଦାୟ ! ଆଲମ !

ବିଦାୟ ! ଆଲମ ! ବିଦାୟ ବିଦାୟ ବିଦାୟ ଆଜି
ଛୁଡ଼ିଯାଅ ଦେଇ କିବା ହଁପଦ ରାଜି !
ତୁମେ ଯାଉଅଛ ପଛେ ମୁଁ ଚାଲିଚି ତବ
ଆଉ କି ଫେରିବ ମତେ ଅବା ଭରି ଦବ ?

ଯାଉଛ ଆଲମ ! ଯାଉଛ କୁଟୀରେ ଚାଲି
ଫେରି ଚାହିଁବନି ? ଆଉ ଆସିବନି କାଲି ?
ଯାଉଛ ଆଲମ ! ଏ ପଥେ ଦଣ୍ଡେ ରହ
ବ୍ୟଥା ମୋର କିଆଁ ହୁଏ ଏତେ ଦୁଃସହ ?

ଯାଉଛ ଆଲମ ! ହାତ ରଖି ତୁମ ହାତେ
ଆଉ ଟିକେ ମୁହିଁ ଚାଲିବି ତୁମରି ସାଥେ
ଆଉ ଟିକେ ମୁହିଁ ତୁମରେ ରହିବି ଚାହିଁ !
କାନ୍ଦିବି ଟିକେ ଲୋଚନୁ ଲୋତକ ବାହି;

ଯାଉଛ ଆଲମ ! ଯାଉଛ କୁଟୀରେ ତବ
ତୁମରେ ଆଜ ମୁଁ କରେ ଟିକେ ଅନୁଭବ;
ଆଉ କେବେ ଦେଖା ଜୀବନେ ହେବ ବା ନାହିଁ
ଦଣ୍ଡେ ରହ ହେ ଏଇ ପଥେ ମୋହ ପାଇଁ !

## ସାଧକର ସ୍ୱପ୍ନ

ଯାଉଚ ଆଲମ ! ପଲ୍ଲୀ କୁଟୀରେ ତବ
ସକଳ ମମତା ମାୟା କି ବରଜି ଦବ ?
ମୋ ପାଇଁ ଶାନ୍ତି ହେବନି କି ତୁମ ମନ ?
ଭଲ ହେବନ ମୁଁ ଥିଲି ତୁମ ପ୍ରିୟଜନ !

ଯାଉଚ ଆଲମ ! ଏଇ ଆଖୁକ୍ଷେତ ତଳେ
ତୁମର ପଲ୍ଲୀ କୁଟୀର ଦିଶଇ ମୋରେ;
ମିଶିଯିବ ସେଇ ବନ ଝିଲ ତୋଠାମାଳ
ଲେଉଟି ଆଉ କି ବୁହିଁବନି ମଠେ ବାଡ଼େ ?

ଯାଉଚ ଆଲମ ! ଦରିଦ୍ର ଏଇ କବି,
ତୁମରେ କାହିଁକି ? ଯାଏ ଏତେ ଅନୁଭବି ?
ଜୀବନେ ତୁମକୁ ଏତେ ପାଇବାର ଭଲ
ବୁଝିପାରେ ଆଜ ହୋଇଗଲୁଁ ଅନ୍ତର !

ଯାଉଚ ଆଲମ ! ଏ ବାଟ ବୁଲିଣି ମୋଡ଼େ
ମୁହିଁ ଛୁଡ଼ିଯିବି, ତୁମେ ଛୁଡ଼ିଯିବ ମୋରେ;
ତୁମେ ମୁହିଁ ଦୁହେଁ ପରସ୍ପରକୁ ଚାହିଁ
କାନ୍ଦିବା ଟିକେ ଲୋଚନୁ ଲୋତକ ବାହି

ହେ ମୋର ଆଲମ ! ସ୍ନେହର ଆଲମ ମୋର !
ନିବିଡ଼ୁ ନିବିଡ଼ ହୁଏ ବନ୍ଧନ ଡୋର !
ଗଣ୍ଠାରୁ ଗଣ୍ଠାର ମମତା ଘନାଇ ଆସେ
ତୁମେ ମୋହ ପାଶେ, ମୁହିଁ ଯେ ତୁମର ପାଶେ !

# ସାଧକର ସ୍ୱପ୍ନ

ହୃଦରେ ହୃଦରେ କଥା କହି କହି ଖାଲି
ତୁମେ ଛାଡ଼ି ଯିବ, ମୁଁ ତୁମରେ ଯିବି ଛାଡ଼ି !
କେହି କାହା ହୃଦ ଆଉ ତ ଦେଖିବା ନାଇଁ,
ଆକାଶ ଧରଣୀ ରହିଥିବ ଯାହା ଚାହିଁ !!

ହେ ମୋର ଆଲମ ! ପ୍ରାଣର ଆଲମ ମୋର !
ମମତା ଉପରେ ମମତା ବଢ଼ଇ ଘୋର !
ମରମେ ମରମେ ଆଶ୍ଳେଷ ଜାଗି ଉଠେ,
ବୁକୁ ତଳେ ତଳେ କୋହ କମ୍ପନ ଫୁଟେ !

ହେ ମୋର ଆଲମ ! ହେ ମୋର ଆଲମ ! ପ୍ରିୟ !
ମିଶିଯାଏ ଆଜ ମୋ ହୃଦରେ ତୁମ ହୃଦ !
ମୋ ଆଖିରେ ଠିକେ ମିଶାଇ ତୁମର ଆଖି
"ଛାଡ଼ି ତ ପାରୁନ" କହି ହେଲେ ବାଟରେ ଡ଼ାକ !

ଯାଉଚ ଆଲମ ! ଯାଅ ! ମୁଁ ଲେଉଟି ଯାଏଁ
ପଥପ୍ରାନ୍ତେ ମୁଁ ଅଟକ କହଁ ଚାହେଁ ?
ତୁମେ ଚାଲିଅଛ ଦୂର ଆଖୁକ୍ଷେତ ଧାରେ
ଫେରିପଡ କିଆଁ ଚାହେଁ ମୁହିଁ ତମ ଆଡ଼େ !

# ସାଧକର ସ୍ୱପ୍ନ

ସ୍ୱଳଚ ଆଲମ ! ଦୁରୁ ହଣିପାଅ ମତେ
ଠିଆ ହୋଇ ସ୍ୱହେଁ ଏ ମାଳ ଝରଣା ତଟେ;
ଆଖୁକ୍ଷେତ ଧାରେ ସୁଦୂର ପଲ୍ଲୀ ଗାଏଁ;
ଅଧେ ଲୁଚ ଅଧେ ହଣି ଯାଅ ତୁମେ ପ୍ରାନ୍ତେ !

ସ୍ୱଳଚ ଆଲମ ! ସ୍ୱଳଚ କୁଟୀର ପୁରେ
ରହିଲଣି ଏବେ ମୋହଠାରୁ କେତେ ଦୂରେ !
ତୁମେ ତ ସ୍ୱଳଚ ! ମୁଁ ତ ଫେର ପାରୁନାଇଁ
ଏ ଝରଣା ତଟେ ରହିଚ ତୁମରେ ସ୍ୱହିଁ !!

—o—

# ସୃଷ୍ଟି

କାହାର ଏଇ ବିପୁଳ ସୃଷ୍ଟି ବୁଲୁଛି ଏଥି ଉଦାସେ ମୁହିଁ
ଦେଖୁଛି ନୀଳ, ପାହାଡ଼ମାଳା ଦେଖୁଛି ବନ କାନନ ଭୂଇଁ ।
ଦେଖୁଛି ଫୁଲ କାନନେ ଫୁଟେ, ଶଇଳ ଚୂଳେ ବାଦଲ ଚରେ
ସନ୍ଧ୍ୟା ହେଲେ ତାରକା ସୋଭା ବସଇ ନୀଳ ଆକାଶ ଚଳେ ।
ବର୍ଷା ଆସେ, ବିଜୁଳି ମାରେ, ତପ୍ତଧରା ଶାନ୍ତ ହୁଏ,
ଶରତ ରାତି ସ୍ୱପ୍ନପୁରୀ ଧରଣୀପରେ ବିରଚି ଯାଏ ।
ବସନ୍ତର ସ୍ପର୍ଶ ଲଭି ଫୁଟଇ ପିକ ମଧୁର ଗାନ,
ମଳୟ କେଉଁ ସୁଦୂରୁ ଆସି ମୁଗ୍ଧ କରେ ସବୁରି ପ୍ରାଣ ।

କେତେ ଯେ ସଖା ବନ୍ଧୁ ଏଥି କାହାର ତୁଲେ ଆଳାପ କରେ,
ସେ କେଉଁ ପ୍ରିୟା ବକ୍ଷେ ଢଳି ପୀୟୁଷ ପିଏ ସରାଗ ଭରେ !
କିଏ ସେ ମତେ ନିନ୍ଦା କରେ ପରାଣି ଭରି ପାଏ କେ ଭଲ
କାହାର ମୁହିଁ ଅବଜ୍ଞାର ପାତ୍ର ହୁଏ ନିରନ୍ତର !
ଉଷ୍ଣ କାର ଅଶ୍ରୁଧାରେ ସିକ୍ତ ହୁଏ ଧରଣୀ ତଳ,
କାହାର ଓଠେ ହାସ୍ୟ ଫୁଟେ ଆନନ୍ଦ ଓ ଗୌରବର ।
କାହାର ଏଇ ବିପୁଳ ସୃଷ୍ଟି ବୁଲୁଛି ଏଥି ଉଦାସେ ମୁହିଁ
ଲକ୍ଷ ଶୋଭା ପରାଣତଳ ନୀରବେ ଯାଏ ନୟନେ ଛୁଇଁ

# ସାଧକର ସ୍ୱପ୍ନ

ପ୍ରଶ୍ନ ଉଠେ ବକ୍ଷତଳେ କାହିଁକି ମୁହିଁ ଏଇଠି ବୁଲେ ?
ଶୁଣଇ ବନକାକଳି ଧାରା, ବସଇ ଦୂର ପାହାଡ଼ ଚୂଳେ
ସାଗରକୂଳେ କାହିଁକି ବସେ ଦେଖଇ ନୀଳ ଊର୍ମିମାଳା
ଫୁଟିଲେ ଫୁଲ ଗନ୍ଧେ ତାର ବିଭୋର ନିଏ ଦୁଃଖ ଭାର
ନିଶୀଥ ନୀଳ ଗଗନେ ମୁହିଁ କେଉଁ ତାରାରେ ରହେ ଯେ ଚାହିଁ
ସେ ମହାଦୂରେ ବନ୍ଧନ କି ମୋହର ଅଛି ମୁଁ ଜାଣେ ନାହିଁ !
ଶରତ ରାତି କାହିଁକି ମତେ ଲାଗଇ ସତେ ଏଭଳି ଭଲ,
ଇଚ୍ଛା ହୁଏ ଜ୍ୟୋତ୍ସ୍ନାଲୋକେ ସନ୍ତରିବି ମୁଁ ଅବିରଳ ।

ଜୀବନେ ଯାରେ କରିଛି ସାଥି ତାହାର ହାସ ତାହାର କଥା
କାହିଁକି ମତେ ଲାଗଇ ଭଲ କାହିଁକି ଦିଏ ଏ ମାଦକତା ।
ନିରନ୍ନର ନୟନତଳୁ ଦୈନ୍ୟବେଳା ଯେ ଲୁହ ବହେ
ତାହାରେ ଚାହିଁ ନୀରବ ହୋଇ କମ୍ପା ମୁହିଁ ଅଟକି ରହେ ?
ଆପଣା ବ୍ୟଥା ବଖାଣି କିଏ କହିଲେ ମୋରେ ପଦିଏ ବାଣୀ
ମୋହର ନେତ୍ର-ଯୁଗଳୁ କମ୍ପା ବହଇ ଅସରନ୍ତି ପାଣି ?
ପ୍ରଶ୍ନ ଉଠେ ବକ୍ଷତଳେ କାହିଁକି ମୁହିଁ ଏଇଠି ବୁଲେ !
ଅସୀମ ଭୁଲେ ଛନ୍ଦହୋଇ କି ଶିଖି ପାଏ ସୃଷ୍ଟି କୂଳେ ?

## ସାଧକର ସ୍ୱପ୍ନ

ଏ ମହା ସୃଷ୍ଟି କାହିଁକି ମତେ ଲାଗଇ ଏତେ ନିଜର ପରି
ଏ ମହା ସୃଷ୍ଟି ପ୍ରତି ରେଣୁରେ ସେନେହ କିମ୍ପା ଦିଏ ମୁଁ ଭରି ?
ଏତେ ଯେ ଏଥୁ ନିଜର ମୋର ଇଚ୍ଛା ନୁହେ ଯିବି ମୁଁ ଛାଡ଼ି
ସୃଷ୍ଟି ପ୍ରତି ରେଣୁରେ କିବା ବନ୍ଧା ମୋର ଜୀବନ ନାଡ଼ି !!
ପୃଥକ୍ ମୁହିଁ ଭିନ୍ନ ମୁହିଁ କମିଷେ ମୁଁ ତ ପାରୁନି ଭାଳି
ଭିତରେ ମୋର ସୃଷ୍ଟି-ବୀଣା ନିତ୍ୟ ବାଜେ ପୀୟୂଷ ଢାଳି ?
ସୃଷ୍ଟି ପ୍ରତି ଅନ୍ତରେ ମୁଁ କରୁଚି ନିତି ଆଲିଙ୍ଗନ
ମୋହର ଏଇ ସୃଷ୍ଟି ସାରା—ଆକାଶ ବଳ ପାହାଡ଼ ବନ !

ମୋହର ଏଇ ସୂର୍ଯ୍ୟ ଚନ୍ଦ୍ର ମୋହର ଏଇ ସାଗର ହ୍ରଦ
ଅସୀମ ଏଇ ଜନତା ମୋର ବକ୍ଷେ ଢାଳେ କି ଆନନ୍ଦ !
ସବୁରି ତୁଳେ ବନ୍ଧା ମୁହିଁ ଛନ୍ଦା ମୁହିଁ ଅସୀମ କାଳ
ଯୁଆଡ଼େ ଚାହେଁ ଦେଖଇ ସେହ୍ନେ ମୋହର ବୁକୁ ରକ୍ତଧାର ।
ଏହାରି କୋଳେ ଯାଏ ମୁଁ ହଜି ଅସୀମ କେଉଁ ସମସ୍ତ ପାଇଁ
ସୃଷ୍ଟି ଚାହୁଁ ବଳି ତ ବଡ଼ ମୋହର ଆଉ କିଛିହିଁ ନାହିଁ ।
ଏ ମହା ସୃଷ୍ଟି କିଭଳି ମତେ ଲାଗଇ ଏତେ ନିଜର ପରି
ଏ ମହା ସୃଷ୍ଟି ପ୍ରତି ରେଣୁରେ ସେନେହ କେତେ ଦିଏ ମୁଁ ଭରି !!

——o——

## ହୋଟେଲ-ପିଲା

କାହାର କୁଟୀରନନ୍ଦି କାମ କରେ ପ୍ରତନନ୍ତ ହୋଟେଲ ଭିତରେ,
ଘର୍ଦ୍ଧ ଦୁଇ ମାସ ହେଲା ମତେ ସେ ପାଶ୍ରନ ଦେଖି,
ମୋ କଥା ସେ ଭାଳେ ବେଳେ ବେଳେ,
ମତେ ମନେ ପକାଏ ସେ ଅନ୍ତରେ ଅନ୍ତରେ
ଦୁଇ ମାସ ପରେ ଯେବେ ଆସି ଏଥି ପହଞ୍ଚିଲ ମୁହିଁ
ମୋରେ ଦେଖି କୋଠିନିଧି ଯାଇବାର ପର
ଉଷତେ ଅମୃତ ହାସ ଓଠକଳେ ଉଠିଲା ସଞ୍ଚରି !
ପଚାରିଲ "ଭଲ ସବୁ ତୋର ? କାହିଁକି ଯାଇଚୁ ଝଡ ?
ଦେହ କି ଖରାପ ଥିଲା ?"
ମୋର ଏଇ ଟିକକ ସଙ୍ଘୋଳା ପଚରା ଭିତରେ
ତା' ଟିକି ଅନ୍ତରତଳେ
କିବା ସୀମାହୀନ ଆନନ୍ଦର ମାୟା କରୁଥିଲା ଲୀଳା !

# ସାଧକର ସ୍ୱପ୍ନ

ଦରିଦ୍ର ଗରିବ ଅରକ୍ଷ ପିଲଟିଏ ସତ !
କିନ୍ତୁ ତା' ହୃଦୟ ତଳେ ଅମୃତର ମଧୁ ଧାରା
କଲତାନ ରଚି ସେଠ୍ଲେ ଗୁଞ୍ଜରି ସନ୍ତତ !
ମତେ ସିଏ ଭୁଲାଇଦିଏ, ମାତ ସେ ପଗୃରେ,
କେବେ ମୁଁ ଫେରିବ ବୋଲି
ଚୁହିଁ ଥାଏ ଆଖିଫେଇ ସେଠ୍ଲେ ଗୃହ ଆଡ଼େ !

ଏ ଅନନ୍ତ ପୃଥିବୀ ଭିତରେ ମୋର କେତେ ସାଙ୍ଗ ସାଥି,
ମୋର କେତେ ପ୍ରିୟ ପରିଜନ,
ମୋର କେତେ ଆତ୍ମୀୟ ସୋଦର, !
ସକଳର ଅବଜ୍ଞା ଓ ଅବହେଳା
ମୁହୂର୍ତ୍ତେ ମୁହୂର୍ତ୍ତେ ଧରି
ମତେ ସୀମାହୀନ କଲବଲ କରୁଥିଲାବେଳେ,
କେଉଁ ଅଜ୍ଞାତ କୋଣର ଅମୃତ ଅନ୍ତରଟିଏ
ମତେ କେଉଁଠୁ ରଖିଅଛି ଧରି
ଆପଣାରୁ ଆପଣାର କରି !!
ଏକଇ ମୁହୂର୍ତ୍ତେ ଛିନ୍ନ-ଭିନ୍ନ ହୋଇ ରହିବାକୁ
ରାଜି ନୁହେ ତାର ସେଇ ଅଟଳ ଅନ୍ତର !
କି ମଧୁ ସମ୍ପଦ କରିବଇଁ ଆଶା
ଏଇ ଟିକିକରୁ ବଳି ?
ଜୀବନ ଯେଉଁଠି ପ୍ରାଣର ଆଶ୍ଳେଷ ଦେଇ
ଜୀବନରେ ଖାଲି ଭଲ ପାଏ

## ସାଧକର ସ୍ୱପ୍ନ

ସେଇଠି ବଣ୍ଟର ନ, ଅନନ୍ତ ଶିଶୁ
ପଡନାହିଁ ଝଡ !!
ଟିକିଏ ସେନେହ ମମତା,
ଟିକିଏ ଆଶା ଆଶ୍ୱାସନା,
ପ୍ରାଣବୋଳା ଟିକିଏ ସହାନୁଭୂତି;
ଯେବେ କିଏ ପ୍ରାଣ ଭରି ଏଥି
ଦେବନାହିଁ ଢାଳି
ଏଇ ମହା ପୃଥିବୀରେ ବଂଚ ରହିବାର
ଅଭିଶାପ ଅଭିଶାପ ଖାଲି !!

ହେ ମୋର ବାଳକ !
କିପରି ବୁଝିଲ ଅବା ତମେ
ମୋ ଦରିଦ୍ର ଜୀବନର ଯେତେ ମାନ ଅପମାନ
ଝଡ଼ ଝଞ୍ଜା ବା ଯେତକ;
କିପରି ବୁଝିଲ ତୁମେ ସରଳ ଅନ୍ତରେ ତବ
ମୋ ଲୁହର ପ୍ରତି ବିନ୍ଦୁ ତଳେ
କି ସମ୍ପଦ କି ଐଶ୍ୱର୍ଯ୍ୟ ଟିକକ
ଖୋଜୁଥିଲ ମୁହିଁ,
ଏତେ ଦିନ ଧରି,
ନ ମାଇ ନ ପାଇ କେଉଁଠି
ମାଉଥିଲି ହତାଶାର ଅନନ୍ତ ସମୁଦ୍ର ତଳେ ବୁଡି !

## ସାଧକର ସ୍ୱପ୍ନ

କେଉଁ ସୁଦୂର ପଲ୍ଲୀର, ଅବୋଧ ବାଳକ ତମେ !
କିପରି ଜାଣିଲ ମୋର
ହୃଦୟ ତଳର ଗୋପନ ଯନ୍ତ୍ରଣା !
ଦେବା ପାଇଁ ଯାରେ ଅପସାରି,
ଶତ ଚେଷ୍ଟା କରି ପାରିନାଇଁ ମୁହିଁ,
ଖୁଲିତ ଝପନ୍ନ ଘଦ୍ଧକ ପରି ଚତୁର୍ଦ୍ଦିଗେ
ଆତୁରତା ଭରା କରଯୁଗଳ ପ୍ରସାରି ।
କି ସମ୍ପଦ ତୁମରେ ମୁଁ ଦେବି ?
କିନ୍ତୁ ପାରିବନି ଦେଇ,
ସୀମାହୀନ ମମତାର
କାହିଁ ପୁରସ୍କାର ?
ତୁମେ ରଖିଗଲ ଯେଉଁ ସ୍ୱର୍ଣ୍ଣଦ୍ୱାର୍
ମୋ ହୃଦୟ ବେଦିକାର ପରେ,
ରହିଥିବ ଯୁଗ ଯୁଗାନ୍ତର ।
ସେଇ ଟିକ ଧରି,
ପ୍ରାଣର ଅମୃତ ହାସ
ବ୍ କୁଟକୁ ଉଠୁଥିବ ଝରି;
ଜୀବନରେ ସେଇଟିକ ଗୁହ୍ୱେ
ତା' ଭିତରେ ପ୍ରାଣର ଯେ
ସାର୍ଥକତା ସବୁଟିକ ପାଏ !!

—o—

# ଆଶ୍ରୟ

ସବୁ କାହିଁ ଲୁଚିଗଲା, ତୁମେ କିନ୍ତୁ ପାରିଲନି ଲୁଚି,
ଆଲୁଅ ଭିତରେ ତମେ, ଅନ୍ଧାର ଭିତରେ ତମେ,
ଆଲୁଅ ଓ ଅନ୍ଧାରର ଲୁଚକାଳି ଖେଳରେ ବି ତମେ,
ଏ ଜୀବନର ଏ ପାରରେ ତମେ, ଆର ପାରରେ ବି ତମେ !
ଆନନ୍ଦର, ଅମୃତର, କଲ୍ୟାଣର, ଧୈର୍ଯ୍ୟ, ଆଶା ଭରସାର,
ସକଳ ସ୍ୱପ୍ନର
ଗୋଟିଏ ସୁନ୍ଦର ପ୍ରାଣବନ୍ତ ଛବି ପରି
ରହିଅଛ ମୋର ହୋଇ ଜଣେ !!

ମୁଁ ରାଜ-ରାଜେଶ୍ୱର ହୁଏ କି ବାଟର ଭିକାରୀ ହୁଏ,
ସାଧାରଣ ନଗଣ୍ୟ ଜୀବ ହୁଏ,
ଅଥବା ପୋକ ମାଛି ପରି, ରାଜପଥର କେଉଁ କଡ଼େ ପଡ଼ି
ଧରା ପୃଷ୍ଠରୁ ନିଶ୍ଚିହ୍ନ ହୋଇ ଯାଏଁ ;
ମୋର ସେଥିରେ ଆନନ୍ଦ କି ଦୁଃଖ ନାହିଁ;
ମୁଁ ଗୋଟିଏ ସବୁଜ ଘାସ ପର୍ଣ୍ଣ ପରି
ଭୂମି ବକ୍ଷର କେଉଁ ଅଜଣା କୋଣରେ ଟିକଏ—
ଢଳି ଯାଉଥାଏଁ,
ମତେ ସେଇ ଗଉରବ ଟିକକ ଦିଅ !
ସେଇତ ମୋର ପୃଥିବୀରେ ଅନନ୍ତ ଆଶ୍ରୟ !!

# ଟିପ୍ପଣୀ

## ସୋରଡ଼ା ଘାଇର ବନ୍ଧ ଉପରେ

ଗଞ୍ଜାମ ଜିଲ୍ଲାରେ ସୋରଡ଼ା ଘାଇର ଦୃଶ୍ୟ ଅତ୍ୟନ୍ତ ରମଣୀୟ ! ଆସିକା ହାଇସ୍କୁଲରେ ଶିକ୍ଷକତା କରୁଥିବା ସମୟରେ କବି ଥରେ ସୋରଡ଼ା ବୁଲି ଯାଇଥିଲେ । କବି ତାଙ୍କର ଜଣେ ସାହିତ୍ୟିକ ବନ୍ଧୁ ଶ୍ରୀମାନ ବୃନ୍ଦାବନ ପାତ୍ରଙ୍କ ସହିତ ସୋରଡ଼ା ଘାଇର ବନ୍ଧ ଉପରେ ବସି ଜ୍ୟୋସ୍ନା ରାତ୍ରରେ ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲେ । ଏହା ପୂର୍ବରୁ କବି ଓ ତାଙ୍କର ଉକ୍ତ ବନ୍ଧୁ ଗଞ୍ଜାମ ଜିଲ୍ଲାର କୌଣସି ଗୋଟିଏ ଶିକ୍ଷାନୁଷ୍ଠାନରେ ଏକତ୍ର ଶିକ୍ଷକତା କରୁଥିଲେ ଏବଂ ଛାତ୍ର-ସମାଜର ସାଂସ୍କୃତିକ ଦିଗର ବିକାଶ ପାଇଁ ଯଥେଷ୍ଟ ଧ୍ୟାନ ଦେଉଥିଲେ । ଫଳରେ ଛାତ୍ରସମାଜ ଓ ଜନସମାଜରେ ଉଭୟ ବନ୍ଧୁଙ୍କର ଯଥେଷ୍ଟ ଆଦର ଥିଲା । ସ୍ୱାଧୀନଚେତା କବି ଓ କବିବନ୍ଧୁ ଶ୍ରୀମାନ୍ ବୃନ୍ଦାବନ ଉକ୍ତ ଶିକ୍ଷାନୁଷ୍ଠାନରେ ଅସତ୍ୟ ଅନ୍ୟାୟ ଅଧର୍ମ ଦେଖିଲେ ସହି ପାରୁନଥିଲେ । ଏଥିଲାଗି କବି ଓ ତାଙ୍କର ବନ୍ଧୁ ଉକ୍ତ ଶିକ୍ଷାନୁଷ୍ଠାନର ପ୍ରଧାନ କର୍ମକର୍ତ୍ତାଙ୍କର ଚକ୍ଷୁଶୂଳ ହେଲେ ଏବଂ ସେଇ ପ୍ରଧାନ କର୍ମକର୍ତ୍ତା କବି ଓ ତାଙ୍କ ବନ୍ଧୁଙ୍କୁ ନାନା ଭାବରେ ହଇରାଣ କରି ବହୁ ଦୂର ଜାଗାକୁ ବଦଳି କରିଦେଲେ । 'ମାଳୁଆ' ପାହାଡ଼ ଖଲ୍ଲିକୋଟର ସ୍ୱନାମଧନ୍ୟ ପାହାଡ଼ । 'ନିର୍ମଳଝର' ନାମକ ଗୋଟିଏ ଝରଣା ମାଳୁଆର ପାଦତଳେ ବହି ଯାଉଛି । କବି ଓ ତାଙ୍କ ବନ୍ଧୁ ସେଠି ଶିକ୍ଷକତା କରୁଥିବାବେଳେ ଗୋଟିଏ ବସାରେ ରହୁଥିଲେ ।

## ଗୁଲବୁ, କନ୍ତୁ·········

ଖଲ୍ଲିକୋଟ ହାଇସ୍କୁଲରେ ଶିକ୍ଷକତା କରୁଥିବାବେଳେ ଏ କବିତାଟି ଲେଖାଯାଇଛି । ଖଲ୍ଲିକୋଟରେ କବିଙ୍କ ବସା ପାଖରେ ଗୋଟିଏ ଗାଈ ଚରୁଥାଏ । ତାର ଗୋଡ଼କୁ କିଏ ଜୋରରେ ବାଡ଼େଇ ଦେଇଥିବାରୁ ଗାଈଟି ମର୍ମନ୍ତୁଦ କଷ୍ଟ ପାଉଥାଏ ଏବଂ ଏଣେ ତେଣେ ବଡ଼ କଷ୍ଟରେ ବୁଲି ଚରୁଥାଏ । ଗାଈଟିର ଏଇ ଅସହାୟ ଓ କରୁଣ ଅବସ୍ଥା କବିଙ୍କ ଲେଖନୀରେ ରୂପାୟିତ ହୋଇଛି ।

## ବିଶ୍ୱନାଥ ବ୍ରହ୍ମା

ଶ୍ରୀମୁକୁନ୍ଦପୁର ପୁରୀ ଜିଲ୍ଲାରେ ଗୋଟିଏ ପ୍ରଧାନ ବ୍ରାହ୍ମଣ ଶାସନ । ଏହି ଶାସନରେ ବିଶ୍ୱନାଥ ବ୍ରହ୍ମା ବୋଲି ଜଣେ ସାମନ୍ତ ବ୍ରାହ୍ମଣ ଥିଲେ । ପ୍ରତିଦିନ ତାଙ୍କ ପାଇଁ ଘିଅ ବଢ଼ାହେଲାବେଳେ ସେ ତାହା ମନେ ଭୋଜନ ନ କରି ଗୋଟିଏ ମୃଷିକ ଅତିଥିକୁ ଡାକି ଦେଇ ଦିଅନ୍ତି । ସେ ଏପରି ପ୍ରାୟ ପ୍ରତିଦିନ କରନ୍ତି ଏବଂ ଘରେ ଯାହା କିଛି ଅଳ୍ପ ଘିଅ ଦରକାର ଥାଏ, ତାକୁ ଆନନ୍ଦରେ ଖାଇ ଚାଲିଯାନ୍ତି ।

## କବିର ଜବାବ,

କବିଙ୍କର ଗୋଟିଏ ଉଚ୍ଚକୋଟୀର କବିତା 'ମୃଷାଦାଣ୍ଡ' 'ରୂପାନ୍ତର' କବିତା ପୁସ୍ତକରେ ପ୍ରକାଶ ପାଇବା ପରେ ଗଞ୍ଜାମ ଅଞ୍ଚଳର କୌଣସି ସ୍କୁଲର ଜଣେ ପ୍ରଧାନ ଶିକ୍ଷକ 'ମୃଷାଦାଣ୍ଡ' ର କେତେକ ପଂକ୍ତି ତାଙ୍କ ବିରୁଦ୍ଧରେ କରି ଲେଖା ଯାଇଛି ବୋଲି, କବିଙ୍କ ବିରୋଧରେ ଅଭିଯୋଗ ଆଣିଥିଲେ । କବିଙ୍କୁ କର୍ମକ୍ଷେତ୍ରରୁ ବାହାର କରିଦେବା ପାଇଁ ଭୁମୂଳ ଚେଷ୍ଟା ଲଗାଇଥିଲେ । ଏ ସବୁ ଦେଖି କବିଙ୍କ ପ୍ରାଣରେ ସେତେବେଳେ ଯେ ଭାବ ଆସିଥିଲା, 'କବିର ଜବାବ' କବିତାରେ ତାହା ରୂପାୟିତ ହୋଇଛି ।

## ବିଦାୟ ! ଆଲମ !

କବି ଗୁରଣ୍ଡି ହାଇସ୍କୁଲରେ ଶିକ୍ଷକତା କରିବା ସମୟର କବିତାଟିର ସୃଷ୍ଟି । ଆଲମ କବିଙ୍କର ଜଣେ ପ୍ରିୟତମ ଛାତ୍ର । ଆଲମ ମାଟ୍ରିକ୍ ପରୀକ୍ଷା ପରେ ସ୍କୁଲରୁ ବିଦାୟ ନେଇ ଗଲାବେଳେ, କବି ତାକୁ ଏବାଟ ଯାଏ ଛାଡ଼ିବାକୁ ଯାଇଥିଲେ । କବି ଭାବିଥିଲେ ତାଙ୍କ ପ୍ରିୟ ଛାତ୍ରଙ୍କ ସହ ବୋଧହୁଏ ଆଉ ଦେଖା ହେବନି । ଗୁରଣ୍ଡିର ବହୁସ୍ଥାନରେ ଆମ୍ବୁଖେତମାନ ଦେଖାଯାଏ ।

—*—

ଓଡ଼ିଶାର ଲବ୍ଧପ୍ରତିଷ୍ଠ ଯଶସ୍ୱୀ କବି

## କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର

—ଉଚ୍ଚକୋଟୀର କବିତାଗ୍ରନ୍ଥ—

| | | |
|---|---|---|
| ୧ । ଆହୁତି | .. ... | ଟ ୦-୭୫ ନୂ: ପ: |
| ୨ । ଅଗ୍ନିଶଙ୍ଖ | .. .. | ଟ ୦-୬୨ ନୂ: ପ: |
| ୩ । ମାଟିଦୀପ | | ଟ ୧ ୦୦ ନୂ: ପ: |
| ୪ । ରୂପାୟନ | | ଟ ୧-[illegible] ନୂ: ପ: |
| ୫ । ଆମ୍ରଲାବ | ... | ଟ ୧-୫୦ ନୂ: ପ: |
| ୬ । ଭସ୍ମ | ... | ଟ ୨-୦୦ ନୂ: ପ: |
| ୭ । ବାଟ ଓ ବେଳା (ଯନ୍ତ୍ରସ୍ଥ) | | ଟ ୧-୫୦ ନୂ: ପ: |
| ୮ । ବର୍ବଲୟ (ଯନ୍ତ୍ରସ୍ଥ) | | ଟ ୫-୦୦ ନୂ: ପ: |

ପ୍ରାପ୍ତିସ୍ଥାନ :—

୧ ) କଟକ ଷ୍ଟୁଡେଣ୍ଟ ଷ୍ଟୋର, କଟକ

୨ ) କଳିଙ୍ଗ ଷ୍ଟୁଡେଣ୍ଟ ଷ୍ଟୋର, କଟକ

୩ ) ଫ୍ରେଣ୍ଡସ ପାବ୍ଲିଶର୍, କଟକ

ବ୍ରହ୍ମପୁର ଜୟହିନ୍ଦ ପ୍ରିଣ୍ଟିଙ୍ଗ ଓ୍ୱାର୍କସରେ ଶ୍ରୀ [illegible] ପାଢ଼ୀଙ୍କ ଦ୍ୱାରା ମୁଦ୍ରିତ । ୧୯୬୨